


ଶ୍ରୀ ବ୍ରଜନାଥ ରଥ

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦ ବିହାରୀ, କଟକ - ୨

'ହେ ମୋର ସ୍ୱଦେଶ' ❑ ଶ୍ରୀ ବ୍ରଜନାଥ ରଥ ❑ ସୁନହଟ-ବାଲେଶ୍ୱର-୭୫୬୦୦୨ ❑ ପ୍ରକାଶକ : ଶ୍ରୀ ଗଂଗାଧର ତ୍ରିପାଠୀ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ବିନୋଦବିହାରୀ କଟକ - ୨ ❑ ଲିପିକାର : ଶବ୍ଦଲିପି, (ବିଶ୍ୱଶ୍ରୀ ପ୍ରେସ୍) ଫକୀରମୋହନ ସେନାପତି ରୋଡ଼, ବାଲେଶ୍ୱର-୭୫୬୦୦୩ ❑ ପ୍ରଥମ ପ୍ରକାଶ : ଅଗଷ୍ଟ ପନ୍ଦର ୧୯୯୭ ❑ ପ୍ରଚ୍ଛଦ ଶିଳ୍ପୀ : ନିରୋଜ ମହାନ୍ତି ❑ ମୂଲ୍ୟ : ପଚାଶ ଟଙ୍କା ମାତ୍ର



"HE MORA SWADESA" ❑ Shri Brajanath Rath ❑ Sunhat Balasore - 756002 ❑ Publisher : Shri Gangadhara Tripathy , Prachi Sahitya Pratisthana, Binod Bihari, Cuttack - 2 ❑ Printed at Sabdalipi, (Biswashree Press) Phakirmohan Senapati Road, Balasore-756003 ❑ First Edition 15th August 1997 ❑ Cover Design : Niroj Mohanty ❑ Price : Rupees Fifty Only

ମୁକ୍ତି ସଂଗ୍ରାମର ଉଦାତ୍ତ ଚାରଣ,

ଗଣ ଚେତନାର

ମହାନ୍ ଉଦ୍‌ଗାତା

**ଜାତୀୟ କବି ବୀରକିଶୋର ଦାସ**

**ଚାରଣ କବି ବାଞ୍ଛାନିଧି ମହାନ୍ତି**

**ଓ**

**ବିଦ୍ରୋହୀ କବି କାଜି ନଜରୁଲ୍ ଇସ୍‌ଲାମଙ୍କ**

ଜନ୍ମ ଶତାବ୍ଦୀ ଅବକାଶରେ

ସେମାନଙ୍କ ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ

ନିବେଦିତ ଅର୍ଘ୍ୟ

**'ହେ ମୋର ସ୍ୱଦେଶ'**

'ସ୍ୱାଧୀନତା' ଶବ୍ଦଟିଏ ନୁହଁଇ ତ ଖାଲି
'ସ୍ୱାଧୀନତା' ଏକ ଅନୁଭବ,
'ସ୍ୱାଧୀନତା' ମଧୁମୟ ଜୀବନର ସ୍ୱାଦ
'ସ୍ୱାଧୀନତା' ସ୍ୱପ୍ନର ବିଭବ ॥

ସ୍ୱାଧୀନତା, କଂସପୁରେ ଦେବକୀ-ନନ୍ଦନ
ସ୍ୱାଧୀନତା ଖୁଦିରାମ- ରକ୍ତର ଚନ୍ଦନ ॥

ସ୍ୱାଧୀନତା 'ଇରମ'ର ରକ୍ତଭିଜା ମାଟି
ସ୍ୱାଧୀନତା ଚଟ୍ଟଗ୍ରାମ- ଅସ୍ତ୍ରାଗାର ଲୁଟି ॥

ସ୍ୱାଧୀନତା, ରକ୍ତତୀର୍ଥ ଜାଲିଆନାବାଗ
ସ୍ୱାଧୀନତା, ଶାନ୍ତିଶିଖା, ମୁକ୍ତିର ବେହାଗ ॥

* * * * * * *

'ସ୍ୱାଧୀନତା' ଶବ୍ଦଟି ଯେ
କୋଣାର୍କର କାରୁକାର୍ଯ୍ୟ ଠାରୁ
ଆହୁରି ସୁନ୍ଦରତର
ଆହୁରି ଯେ ମନୋରମ, ଚାରୁ ।

ପିରାମିଡ୍ ଠାରୁ ସେ ପ୍ରାଚୀନ,
ଏଲୋରା ଓ ଅଜନ୍ତାର ଭିତ୍ତିଚିତ୍ର ଠାରୁ
ବର୍ଣ୍ଣୋଜ୍ଜ୍ୱଳ କାନ୍ତ-କମନୀୟ,
ହିମାଦ୍ରି ଶିଖର ଠାରୁ ତୁଙ୍ଗ ପୁଣି
ବିଶ୍ୱର ବିସ୍ମୟ ॥

('ଶବ୍ଦଟିଏ : ସ୍ୱାଧୀନତା' - ହେ ମହାଜୀବନ !)

# ଆ ଭା ଷ

ଚାହୁଁଚାହୁଁ ସ୍ୱାଧୀନତାର ପଚାଶବର୍ଷ ହୋଇଗଲା । ଏହି କାଲିପରି ଲାଗୁଛି । ସ୍କୁଲରେ ପାଠ ପଢୁଥିଲି । ଦେଶ ସ୍ୱାଧୀନ ହେବବୋଲି ଖବର ପ୍ରଚାରିତ ହେଲା । ଚାରିଆଡ଼େ ସ୍ୱାଧୀନତା ଦିବସ ପାଳନ ପାଇଁ ଆୟୋଜନ ଆରମ୍ଭ ହୋଇଗଲା । କି ଆନନ୍ଦ, କି ଉନ୍ମାଦନା ! ସବୁଆଡ଼େ ସେହି କଥା - ଇଂରେଜ ହଟିବେ, ଆମ ଲୋକେ ଶାସନ ଗାଦିରେ ବସିବେ, ଶୋଷଣ ଅତ୍ୟାଚାର ରହିବ ନାହିଁ, ଗାନ୍ଧିଜୀଙ୍କ ପରିକଳ୍ପିତ ସ୍ୱରାଜ, ରାମରାଜ୍ୟ ପ୍ରତିଷ୍ଠା ହେବ । ଗୋପବନ୍ଧୁଙ୍କ ସ୍ୱପ୍ନ ସାକାର ହେବ । ଖୁଦିରାମ, ଭଗତ ସିଂ, ଚନ୍ଦ୍ରଶେଖର, ମାତଙ୍ଗିନୀ, ବାଘାଯତୀନ, ଲକ୍ଷ୍ମଣ ନାୟକ, ଇତ୍ୟାଦି ବୀର ସହୀଦଙ୍କର ଆତ୍ମବଳିଦାନ ବ୍ୟର୍ଥ ହେବନାହିଁ । ସେମାନଙ୍କ ରକ୍ତରେ ଫୁଟିବ ସ୍ୱାଧୀନତାର ଆରକ୍ତ କରବୀ । ଭାରତର କୋଟିକୋଟି ଲୋକ ଚାଖିବେ ମୁକ୍ତିର ସ୍ୱାଦ, ସ୍ୱାଧୀନତାର ସୁଫଳ । ଏକ ରଙ୍ଗିନ ଆଶାର ଲାଲ ଆପେଲ ଯେମିତି ସମସ୍ତଙ୍କ ଆଖିଆଗରେ ଝୁଲି ସମସ୍ତଙ୍କୁ ମୋହମୁଗ୍ଧ କରିଦେଲା ।

ସ୍ୱାଧୀନତା ଆସିଲା । ବିଦେଶୀ ହଟିଲେ । ଦେଶୀଲୋକ ଗାଦିରେ ବସିଲେ । ନୂଆ ଜାତୀୟ ପତାକା ଆକାଶରେ ଉଡ଼ିଲା । ସଭା, ଶୋଭାଯାତ୍ରା ଆଉ ସ୍ଲୋଗାନରେ ଗଗନ ପବନ କମ୍ପିଲା । ମିଠେଇ ବଣ୍ଟାହେଲା । ଆମେ ପିଲାମାନେ ସ୍ୱାଧୀନତାର ଅର୍ଥ କ'ଣ ନବୁଝିବି ଏକ ଅଜଣା ଆନନ୍ଦରେ ଆତ୍ମହରା ହୋଇ କବି ବାଞ୍ଛାନିଧି ମହାନ୍ତିଙ୍କ ଗୀତ- 'ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ, ସ୍ୱାଧୀନ, ସ୍ୱାଧୀନ, ସ୍ୱାଧୀନରେ' ଗାଇ ଗାଇ ସହର ପରିକ୍ରମା କଲୁଁ । ରାତିରେ ଆଲୁଅ ସଜା ହେଲା, ବାଣ ଫୁଟାହେଲା, ନାଚ-ଗୀତ ହେଲା । କେତେ ମଉଜ ମଜଲିସ୍‌ରେ ସମସ୍ତେ ମାତିଗଲେ । ସେଦିନ ଜଣେ ଏଗାର ବାର ବର୍ଷର କିଶୋର ବାଳକର କୋମଳ ପ୍ରାଣକୁ ସଦ୍ୟ ସ୍ୱାଧୀନତାର କୁହୁକପରୀ ତାର ସୁନେଲି ଡ଼େଣାରେ ଘୋଡ଼ାଇ ଏଭଳି ଭୁଲାଇ ଦେଇଥିଲା ଯେ ଆଜି ପଚାଶବର୍ଷ ପରେ ଜୀବନର ଧୂସର ଅପରାହ୍ନରେ ଯେତେବେଳେ ପଛକୁ ଆଖି ଫେରାଉଛି ସବୁକିଛି ଧୂଆଁଳିଆ ମନେହେଉଛି ।

ସେତେବେଳେ କିଛି ଲୋକ କହୁଥିଲେ- 'ଏ ଆଜାଦୀ ଝୁଠା ହେ'- ଏ ସ୍ୱାଧୀନତା ମିଛ,ନକଲି- ଏ କେବଳ ଦେଶୀ ଶାସକ,ଶୋଷକ ଓ ଲୁଟିଖିଆମାନଙ୍କ ସ୍ୱାଧୀନତା । ସାଧାରଣ ଗରିବ, ସର୍ବହରା, ଖଟିଖିଆଙ୍କ ପାଇଁ ଏ ସ୍ୱାଧୀନତା ନୁହେଁ । ସେମାନଂକୁ କୁହାଗଲା ଦେଶଦ୍ରୋହୀ, ଜେଲରେ ଭର୍ତ୍ତି କରାଗଲା । ଦେଶଭକ୍ତ ଗଣତନ୍ତ୍ରୀମାନେ ସେମାନଂକୁ ଥଟ୍ଟାକଲେ, ସେମାନଂକୁ ଜବତ କରିବା ପାଇଁ ଓ ନିପାତ କରିବା ପାଇଁ ଆଇନର ଜାଲ ଖଞ୍ଜାହେଲା । ଏ କିଶୋର ବାଳକ ସେକଥା ସେଦିନ ବି ଆଖିରେ ଦେଖିଛି ।

କିନ୍ତୁ ଆଜି ? ପଚାଶ ବର୍ଷର ସ୍ୱାଧୀନତାର ସାଲତମାମି କଲାବେଳେ ପ୍ରଶ୍ନ ଉଠୁଛି

ଆମେ ଆଜି କେଉଁଠି ? ଆମ ଦେଶର କୋଟିକୋଟି ସାଧାରଣ ଶ୍ରମଜୀବୀ ମଣିଷ କେଉଁଠି ? ଆମର ସ୍ୱାଧୀନତା କେଉଁଠି ? ଆଉ କେଉଁଠି ଆମର ସୁମହାନ ମୂଲ୍ୟବୋଧ ? ମୁଣ୍ଡ ଘୂରି ଯାଉଛି, ସବୁ ଗୋଳମାଳ ହୋଇ ଯାଉଛି, କିଛି ଭାବି ହେଉନାହିଁ ଆଉ ।

ସେହି ଯେ ପଚାଶ ବର୍ଷତଳେ ସ୍ୱାଧୀନତାକୁ ସ୍ୱାଗତ ଜଣାଇ କଞ୍ଚା-କଅଁଳ ହାତରେ କଲମ ଧରିଥିଲି ଆଜି ହୁଏତ ସେ କଲମ ହୋଇଛି ଟାଣ, କିନ୍ତୁ ହାତ ହୋଇ ଆସିଲାଣି ଶିଥିଳ, ଅବଶ । ସେଦିନ କି ଏକ ଅନନୁଭୂତ ଆନନ୍ଦରେ ସ୍ୱାଧୀନତା ପାଇଁ ଯେଉଁ ଗୀତ ଲେଖିଥିଲି ତାର ମାଦକତା ଆଜି ଆଉ ମୋ ମନରେ ନାହିଁ । ସବୁ ଯେମିତି ଓଲଟ ପାଲଟ ହୋଇଯାଇଛି । ଏକ ବିରାଟ ସ୍ୱପ୍ନଭଂଗର ସାମ୍ରାଜ୍ୟରେ ଯେମିତି ମୁଁ ଘୂରିବୁଲୁଛି ଗୋଟିଏ ଅମୋକ୍ଷ ବେତାଳ !

କିନ୍ତୁ ମୁଁ ଦେଶକୁ ଭଲପାଏଁ, ଏ ମାଟିର ମଣିଷକୁ ଭଲପାଏଁ, ଭଲପାଏଁ ଏ ଦେଶର ପାଣି-ପବନକୁ, ଐତିହ୍ୟ ଓ ସଂସ୍କୃତିକୁ, ଆଉ ଭଲପାଏଁ ସେମାନଂକୁ ଯେଉଁମାନେ ଏ ମାଟିର ଜୀବନଧାରାକୁ କରିଛନ୍ତି ଉର୍ବର, ପ୍ରତିଟି ସଂଗ୍ରାମକୁ କରିଛନ୍ତି ତେଜୀୟାନ ଆଉ ନିଜ ରକ୍ତର ବିନିମୟରେ ମୁକ୍ତିର ସୂର୍ଯ୍ୟକୁ କରିଛନ୍ତି ବହ୍ନିମାନ୍ । 'ହେ ମୋର ସ୍ୱଦେଶ' କାବ୍ୟଗ୍ରନ୍ଥ ମୁଁ ଭଲ ପାଉଥିବା ସେ ସବୁର ସ୍ତବଗାଥା; ଆଉ ଯେଉଁସବୁ ଅପଦେବତା ଏ ସବୁର ବାଧକ, ମୋ କବିତା ସେମାନଂକ ବିରୋଧରେ ଆଗ୍ନେୟ ତର୍ଜନୀ ସଂକେତ ।

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ହେଉଛି ମୋ କାବ୍ୟ ସାଧନାର ସୁବର୍ଣ୍ଣ ଜୟନ୍ତୀ । ମୋର ପ୍ରିୟ ଜନ୍ମଭୂମି, ତାର ସ୍ୱାଧୀନତା, ତାର ସୁଖଦୁଃଖ ସମସ୍ୟାବଳୀକୁ ନେଇ ମୋର ଯେଉଁ କାବ୍ୟିକ ପ୍ରତିକ୍ରିୟା, ତାହା ରୂପ ପାଇଛି ଏହି 'ହେ ମୋର ସ୍ୱଦେଶ' କାବ୍ୟ ଗ୍ରନ୍ଥରେ । ଏଥିରେ ଅନ୍ତର୍ଭୁକ୍ତ କବିତାଗୁଡ଼ିକ ବିଭିନ୍ନ ସମୟରେ ବିଭିନ୍ନ ପରିପ୍ରେକ୍ଷୀରେ ରଚିତ ହୋଇଥିଲେବି ଏଗୁଡ଼ିକର ଅନ୍ତଃସୂତ୍ର ଏକ ଓ ଅଭିନ୍ନ ।

ପ୍ରକାଶକବନ୍ଧୁ ଶ୍ରୀଯୁକ୍ତ ଗଂଗାଧର ତ୍ରିପାଠୀ ସ୍ୱତଃପ୍ରବୃତ୍ତ ହୋଇ ଏହାକୁ ପ୍ରକାଶ କରିବାକୁ ଆଗେଇ ଆସିଥିବାରୁ ମୋର ଧନ୍ୟବାଦାର୍ହ । ତରୁଣ ଶିଳ୍ପୀ ଶ୍ରୀମାନ୍ ନିରୋଜ ମହାନ୍ତି ଏହାର ସୁଶୋଭନ ପ୍ରଚ୍ଛଦପଟ୍ଟଟିଏ ଆଙ୍କି ଦେଇଥିବାରୁ ସେ ମଧ୍ୟ ମୋର ଧନ୍ୟବାଦର ପାତ୍ର ।

ଅବଶେଷରେ ମୋର ଅଗଣିତ ଜଣା-ଅଜଣା ମୁଗ୍ଧ ପାଠକଙ୍କ ଇଜିଲାସ୍‌ରେ ପେଶ୍ କଲି ଏ କାବ୍ୟଗ୍ରନ୍ଥକୁ । ସେମାନଂକ ରସଗ୍ରାହିତା ଉପରେ ସର୍ବଶେଷ ଭରସା ରଖି ରହିଲି ।

ସୁନହଟ, ବାଲେଶ୍ୱର
ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ
ଅଗଷ୍ଟ ପନ୍ଦର, ୧୯୯୭

ଶ୍ରୀ ବ୍ରଜନାଥ ରଥ

# ବିଷୟ ବିନ୍ୟାସ


| | | |
|---|---|---|
| ୧ | ସ୍ୱଦେଶ | ୧ - ୪ |
| ୨ | ଭାରତର ମାନଚିତ୍ର | ୫ - ୯ |
| ୩ | କଥା କୁହ, ଆଖି ଖୋଲ<br>ମୋ ଦେଶର ହେ ଗଣଦେବତା | ୧୦ - ୧୩ |
| ୪ | ସ୍ୱପ୍ନର ଭାରତବର୍ଷ : କ୍ଷତବିକ୍ଷତ ଦେଶ | ୧୪ - ୧୯ |
| ୫ | ସ୍ୱାଧୀନତା ତୁମ ହେଉ ନବ ଅଭିଷେକ | ୨୦ - ୨୬ |
| ୬ | ଭାରତବର୍ଷ | ୨୭ - ୨୯ |
| ୭ | ଭାରତ ଆବିଷ୍କାର | ୩୦ - ୩୫ |
| ୮ | କବିର ପ୍ରାର୍ଥନା | ୩୬ - ୪୨ |
| ୯ | ହେ ଉତ୍କଳ ! ଜନନୀ ଉତ୍କଳ !! | ୪୩ - ୪୮ |
| ୧୦ | ଏହି ଭାରତରେ | ୪୯ - ୫୨ |
| ୧୧ | ସ୍ୱପ୍ନର ତୁମ ଜଉଗଡ଼ ଯିବ ଜଳି | ୫୩ - ୫୫ |
| ୧୨ | ହେ ମହାମହିମ ଜାଣିରଖ | ୫୬ - ୫୮ |
| ୧୩ | ଆଉ କେତେକାଳ ? | ୫୯ - ୬୧ |
| ୧୪ | ଆଜିର ପଦ୍ମ | ୬୨ - ୬୪ |
| ୧୫ | ଲେଖ ମୁକ୍ତିର ଇତିହାସ | ୬୫ - ୬୭ |
| ୧୬ | ପ୍ରତିବାଦ କର | ୬୮ - ୬୯ |
| ୧୭ | ନିରାଶା ନିଆଁ ଭେଦି ହସିବ ଦିନେ | ୭୦ - ୭୨ |
| ୧୮ | ଆମେ କରୁଥିଲୁ ଫୁଲର ବେପାର | ୭୩ - ୭୫ |

୧୯ ।। ସେମାନେ ତାଙ୍କୁ ଭାଙ୍ଗିଦେଲେ ।। ୭୬ - ୭୭ ।।
୨୦ ।। ଅଯୋଧ୍ୟା ।। ୭୮ - ୮୦ ।।
୨୧ ।। କଳାହାଣ୍ଡି ।। ୮୧ - ୮୩ ।।
୨୨ ।। ବିଦୀର୍ଣ୍ଣ ବସୁଧା ।। ୮୪ - ୮୬ ।।
୨୩ ।। ସେଦିନ ଆସିଲା ବନ୍ୟା ।। ୮୭ - ୯୦ ।।
୨୪ ।। କାରୁତୀର୍ଥ ।। ୯୧ - ୯୫ ।।
୨୫ ।। ତସ୍‌ଲିମା ।। ୯୬ - ୯୮ ।।
୨୬ ।। ତୁମେ ଟେଣ୍ଟୁ ପ୍ରିୟ ମୋର ।। ୯୯ -୧୦୦ ।।
୨୭ ।। ଲିଭିଗଲା ପରେ ତଥାପି ଜଳୁଛ ।। ୧୦୧ ।।
୨୮ ।। ହେ ଆଶାର ଆଲୋକିତ ସରଣୀ ।। ୧୦୨-୧୦୩ ।।
୨୯ ।। ମୁକ୍ତିର ଉଦ୍ୟତ ତଲଓ୍ୱାର ।। ୧୦୪-୧୦୫ ।।
୩୦ ।। ହେ ବାଘାଯତୀନ୍ ।। ୧୦୬-୧୦୮ ।।
୩୧ ।। ଗାନ୍ଧିଜୀ ସ୍ମରଣେ ।। ୧୦୯-୧୧୨ ।।
୩୨ ।। ସ୍ୱାଧୀନତା କଥା ପଚାରନା ।। ୧୧୩-୧୧୭ ।।
୩୩ ।। ସାକ୍ଷାତକାର : କବିତାରେ ।। ୧୧୮-୧୨୭ ।।




# ସ୍ୱଦେଶ

ଜାଣିଥିଲି ଦିନେ କେଉଁକାଳେ
ଜୀବନର ପ୍ରଥମ ସକାଳେ,
ଯେ ମାଟିରେ ପାଦଦେଲେ
ପୁଣ୍ୟତୋୟା ଯାହାର ସଲିଳେ
ଭରିଯାଏ ଧମନୀରେ
ବିନ୍ଦୁ ବିନ୍ଦୁ ଅମୃତର ମଧୁର ନିର୍ଯାସ,
ସେହି ଚିର ପରିଚିତ ମୋ ପ୍ରିୟ ସ୍ୱଦେଶ ।।

ଜାଣିଥିଲି କେଉଁକାଳେ ଦିନେ
ସଞ୍ଚାରିତ ଯାହାର ପବନେ
ହୃଦୟର ପ୍ରତିଟି ସ୍ପନ୍ଦନେ
ନିଃଶ୍ୱାସ - ପ୍ରଶ୍ୱାସ ମୋର
ଅହରହ ହୁଏ ଆତଯାତ,
ହଜିଯାଏ ଜୀବନର ଯେତେ ଦୀର୍ଘଶ୍ୱାସ,
ସେହି ଚିର ପରିଚିତ ମୋ ପ୍ରିୟ ସ୍ୱଦେଶ ।।

ଜାଣିଥିଲି, ଜାଣିଥିଲି ଦିନେ
ଅଦ୍ଭୁତ ଆଲୋକ ଯା'ର
ଅତନ୍ଦ୍ର ଆଖିରେ ମୋର
ଭରିଦିଏ ବଞ୍ଚିବାର ବିପୁଳ ବିଶ୍ୱାସ ;
ସେହି ଚିର ପରିଚିତ ମୋ ପ୍ରିୟ ସ୍ୱଦେଶ ।।

ଆଜି କିନ୍ତୁ ଅପରାହ୍ଣ - ସୂର୍ଯ୍ୟାଲୋକେ ଚାହିଁ
ଦେଖେ ମୁହିଁ
ସେ ସ୍ୱଦେଶ କାହିଁ ?
କାହିଁ ତାର ଶ୍ୟାମକାନ୍ତ ଅପରୂପ ବେଶ ?
କାହିଁ ତାର ମେଘମୁକ୍ତ ସାଦା ଜହ୍ନରାତି ?
କାହିଁ ତାର ଲୋଭନୀୟ-
କମନୀୟ ମୁଗ୍ଧ ମଧୁମାସ ??

ସେଠି ଆଜି
କେଉଁ କ୍ରୁଦ୍ଧ - ବିକ୍ଷୁବ୍ଧ ସିଂହର
ସମୁଦ୍ୟତ ଉଦ୍ଧତ ଥାବାର ?
ଶକ୍ତ ଆଘାତରେ
ରକ୍ତ ଝରେ,
ରକ୍ତ ଝରେ ତାଳୁରୁ ତଳିପା,
କେଉଁ ଭଣ୍ଡ ତାନ୍ତ୍ରିକର ମନ୍ତ୍ରଶକ୍ତି
ସ୍ୱର୍ଣ୍ଣପ୍ରସୂ ସ୍ୱଦେଶକୁ ମୋର
କୋରି କୋରି କରିଛି ଖୋଳପା ??

ଅବିଶ୍ରାନ୍ତ ଅଗ୍ନିମୁଖା ବଂଧୁକର ଗୁଳି
ଦିକ୍‌ଦିଗନ୍ତୁ ଛୁଟିଆସେ ଖାଲି,
ଦିବାଲୋକେ ରକ୍ତମଖା ଶାଣିତ ଭୁଜାଲି
ଦ୍ୱିତୀୟାର ଚନ୍ଦ୍ର ଭଳି
ଚକ୍‌ମକ୍ କରେ ;
ଏବଂ କେଉଁ ରାଜ୍ୟଲୋଭୀ
ପ୍ରତାରକ କାପାଳିକ ଧର୍ମାନ୍ଧ ହାତରେ
ରୁଦ୍ରାକ୍ଷର ମାଳାଗଡେ
ଧର୍ମଧ୍ୱଜା ଉଡ଼େ !!

ଅବା କେଉଁ ଅକ୍ଟୋପାସୀ -
ବଣିକ ବିଦେଶୀ
ବାନ୍ଧିଦିଏ
ଲୋଭନୀୟ ବକ୍‌ଲେସ୍‌ରେ ତା'ର
କୋଟି କୋଟି ଅସହାୟ
ନିରୁପାୟ ମଣିଷର ଗଳା,
ଏବଂ କେଉଁ ଅର୍ଥଲୋଭୀ-
ଦଲାଲର ପାପୁଲିରେ
ଥେଇଥେଇ ନୃତ୍ୟକରେ
ଏ ଦେଶର ଯକ୍ଷପୁରୀ -
ଗନ୍ତାଘର ତାଲା !!

ଏହିକି ମୋ ସ୍ୱର୍ଣ୍ଣପ୍ରସୂ ସ୍ୱଦେଶର ଚିତ୍ର ?
ବିସ୍ମିତ ନୟନେ ମୋର
ଚାହିଁ ଦେଖେ ମୁହିଁ,
ଲାଗେ ମୋତେ ସବୁ କିଛି
ବିଚିତ୍ର ବିଚିତ୍ର ।।

କାହିଁ ମୋ ସ୍ୱଦେଶ କାହିଁ
କାହିଁ ମୋର ସେ ପ୍ରିୟ ସ୍ୱଦେଶ ?
କିଏ ଆଜି ହରିନେଲା ତାକୁ ?
ପଥଭୁଲି ବାଟହୁଡ଼ି
କେଉଁ ଘନ ଜଙ୍ଗଲରେ ହଜିଗଲା ସିଏ ?
ଲୁଟିନେଲା ବଳାତ୍କାରେ କିଏ ?
କୁହ କୁହ କେଉଁ ଦସ୍ୟୁ - ଡ଼ାକୁ ??

ମୁଁ ଆଜି ଖୋଜୁଛି ମୋର ଜନ୍ମମାଟି
ମୋ ପ୍ରିୟ ସ୍ୱଦେଶ ;
କୁହ କୁହ ଗ୍ରହ -ତାରା
କୁହ କୁହ ମୋତେ ଆଜି

ନକ୍ଷତ୍ର- ମାଳିନୀ ନୀଳ ପ୍ରଶାନ୍ତ ଆକାଶ ;
କେବେ ହେବ ଏ ରାତ୍ରିର ଶେଷ ?
ମୋ ସ୍ୱପ୍ନର ସ୍ୱଦେଶକୁ
ଖୋଜି ମୁଁ ପାଇବି କେଉଁ
ରଶ୍ମିରାଜି ବିଚ୍ଛୁରିତ ସୁବର୍ଣ୍ଣ - ସକାଳେ ?
ମହାକାଳ ପ୍ରେକ୍ଷାପଟେ
ଆପଣାର ଶାଶ୍ୱତ କପୋଳେ
ଆଙ୍କିଦେଇ ଦୀପ୍ତିମୟୀ ସୌଭାଗ୍ୟର ରେଖା,
କେବେ କୁହ, କୁହ କେବେ
ଉଠିବ ଉଠିବ ଜଳି
ଦେହେ ତା'ର ଶତ ସୂର୍ଯ୍ୟଶିଖା ??

ନବଯୌବନର ବେଶେ
ସେ ଆସିବ ଫେରି,
ଉଦ୍‌ବେଳିତ ଅମୃତର
ଛଳଛଳ ପୂର୍ଣ୍ଣକୁମ୍ଭ ଧରି,
ଭାରତ- ସାଗର ତଳୁ
ଅଭ୍ରଭେଦୀ ହିମାଚଳ ଶିରେ
ବୈଦୁର୍ଯ୍ୟର ଦୀପ୍ତି ନେଇ
ନବକାନ୍ତ ଶ୍ୟାମଳ ସମ୍ଭାରେ
ଖେଳିଯିବ ଜୀବନର ତଡ଼ିତ୍ ପ୍ରବାହ,
ନରଘାତୀ ରାକ୍ଷସର ଯେତେ ମୃତ୍ୟୁଭୟ
ହେବ ହେବ
ହେବ ତାର ଶେଷ,
କେତେ ଦୂରେ କୁହ ତୁମେ
କାହିଁ ମୋର ପ୍ରିୟ ଜନ୍ମଭୂମି ?
କାହିଁ ଚିର ପରିଚିତ
ମୋ ସୁନ୍ଦର ସ୍ୱପ୍ନର ସ୍ୱଦେଶ ??



# ଭାରତର ମାନଚିତ୍ର

ଅନେକ ଦିନର କଥା ;
ଛୋଟଥିଲି,
ସ୍କୁଲରେ ପାଠ ପଢୁଥିଲି,
ଦିନେ ଆମ ଭୂଗୋଳ ଶିକ୍ଷକ
ଆଙ୍କିବାକୁ ଦେଇଥିଲେ
ଭାରତର ମାନଚିତ୍ର ଏକ ;
ଏବଂ ବାରମ୍ବାର କହିଥିଲେ
ଚିତ୍ରଟିଏ ଆଙ୍କିବାକୁ
ନିର୍ଭୁଲ ଓ ନିଖୁଣ ଭାବରେ ।।

ସଫେଦ କାଗଜ ପରେ
ମୋ କଞ୍ଚା ହାତରେ
ଅନେକ ସମୟ ଧରି
ଡରି ଡ଼ରି ବହୁ କଷ୍ଟ କରି
ଆଙ୍କିଥିଲି ଯେଉଁ ଚିତ୍ର ଭାରତବର୍ଷର
ପାଇଲାନି ମନକୁ ତାଙ୍କର
କହିଲେ ସେ -
"ହେଲାନାହିଁ
ରହିଗଲା ବହୁ ତ୍ରୁଟି ଏ ମାନଚିତ୍ରରେ ।
ଏହିପରି ଭୁଲକରି
ଯେମିତି ସେମିତି
ସ୍ୱଦେଶର ମାନଚିତ୍ର
କେବେହେଲେ ଅଙ୍କାଯାଏ ନାହିଁ ।।"

ଏହାପରେ ଏକ ପରେ ଏକ
ମୁଁ ପୁଣି ଆଙ୍କିଲି କେତେ ମାନଚିତ୍ର
ମୋର ପ୍ରିୟ ଜନ୍ମଭୂମି ଭାରତବର୍ଷର ,
ନାନା ରଙ୍ଗେ ରଞ୍ଜିତ ବି କଲି
ସର୍ବାଙ୍ଗ ତାହାର ।

ଦିନ ପରେ ଦିନ
ଏମିତି କେତେ ନା କେତେ
ଚିତ୍ର ତାର ଅଙ୍କା ହେବା ପରେ
ସୁନ୍ଦର ନିର୍ଭୁଲ ଏକ
ଭାରତର ମାନଚିତ୍ର
ଦିନେ ମୁହିଁ
ଆଙ୍କି ପାରିଥିଲି ।
ସେଦିନ ଆନନ୍ଦ ମୋର
କହିଲେ ନ ସରେ,
ସାଫଲ୍ୟର ଚରମ ଓ ପରମ ତୃପ୍ତିରେ
ହୋଇଥିଲି ମୁହିଁ ଆତ୍ମହରା ।।

ଏହାପରେ ବିତିଗଲା
କେତେଦିନ, କେତେ ବର୍ଷ-ମାସ,
ହଠାତ୍ ଦେଖିଲି ଦିନେ
ବିସ୍ମିତ ନୟନେ
କାନ୍ଥରେ ଝୁଲୁଚି ଏକ ନୂଆ ମାନଚିତ୍ର
ଭାରତବର୍ଷର ;
ଅବାଧ୍ୟ ପିଲାଟେ ଭଳି
ଦୋହଲାଇ ଦେଉଥିଲା ତାକୁ
ବେଳେବେଳେ ପଶିଆସି
ମତୁଆଲା ଦୁରନ୍ତ ପବନ ।।

ପ୍ରଥମେ ମୁଁ ଭଲ କରି ପାରିଲିନି ଜାଣି
ଇଏ କଣ ସେହି ମାନଚିତ୍ର
ସ୍ୱର୍ଗାଦପି ଗରୀୟସୀ ଭାରତବର୍ଷର ?
ଯାହାକୁ ମୁଁ କେତେ କଷ୍ଟ କରି
ଆଙ୍କିଥିଲି ପିଲାଦିନେ
ନିର୍ଭୁଲ ଓ ନିଖୁଣ ଭାବରେ,
ସିଏ କେଉଁ
ସ୍ୱପ୍ନ-ଭିଜା ମୃତ ଅତୀତରେ ??

ମନରେ ଜାଗିଲା ପ୍ରଶ୍ନ
ସେତେବେଳେ ଆଙ୍କୁ ଆଙ୍କୁ
ସେହି ଚିତ୍ରଟିକୁ
ଯଦିବା ସମାନ୍ୟ କିଛି ହେଉଥିଲା ଭୁଲ
ପାଉଥିଲି ଦଣ୍ଡ ପୁଣି ଖାଉଥିଲି ଗାଳି ;
କିନ୍ତୁ ଏହି ମାନଚିତ୍ର
ଦିଶେ ଯାହା ବିବର୍ଣ୍ଣ, ବିକୃତ,
ତାକୁ ଯେ ବିକୃତ କଲେ,
କଲେ ହତଶିରୀ
ବୋଳିଦେଲେ କଳଙ୍କର କାଳି,
ସେମାନଙ୍କ ପାଇଁ କେଉଁ ଦଣ୍ଡ ଅଛି କୁହ ?
ଅଛି କେଉଁ ବନ୍ଦୀଶାଳା ?
ଫାଶିଖୁଣ୍ଟ, ଲୁହାର ଶିକୁଳି ??

ବହୁବର୍ଷ ବିତିଛି ତାପରେ,
ଆଜି ଏହି ଜୀବନର ଧୂସର ସଂଧ୍ୟାରେ
ସ୍ଥିରନେତ୍ରେ ଦେଖେ ମୁହିଁ
ଭାରତର ମାନଚିତ୍ର
ଯେବେ ଆଉଥରେ,

ଭାସିଉଠେ ମୋ ଆଖି ଆଗରେ
ଲକ୍ଷଲକ୍ଷ ରକ୍ତଦାଗ, କଳଙ୍କର ଛିଟା,
ଜଳିଉଠେ ସେ ମାନଚିତ୍ରରେ
କୋଟି କୋଟି ନିରୀହ ଓ
ଅସହାୟ ମଣିଷର
ସର୍ବାଗ୍ରାସୀ ଲେଲିହାନ ଚିତା !!

ପୁଣି ଥରେ ପ୍ରଶ୍ନ ଜାଗେ ମନେ
ଇଏ କଣ ମଧୁରାଓଙ୍କର ସେହି
'ପବିତ୍ର ଭାରତ-ଭୂମି
ଯାହାର ସନ୍ତାନ ଆମ୍ଭେ ଅଟୁ ସରବେ ?
ଯା'ର ଶ୍ରୀଚରଣ ସେବା
ପାଇଁ ମନ-ପ୍ରାଣ ଦେବା
ଗାଇବା ତାହାର ଗୀତି ଆନନ୍ଦ ରବେ ??'

ଇଏ କଣ ରବୀନ୍ଦ୍ରନାଥଙ୍କ ସେହି
ଭୁବନମୋହିନୀ
ଚିର କଲ୍ୟାଣମୟୀ ,
ପୁଣ୍ୟତୀର୍ଥ ଭାରତବର୍ଷ ??

ଇଏ କଣ ବଙ୍କିମଚନ୍ଦ୍ରଙ୍କ ସେହି
ସୁଜଳା-ସୁଫଳା
ମଳୟଜ-ଶୀତଳା
ଶସ୍ୟ-ଶ୍ୟାମଳା,
ଫୁଲ୍ଲ-କୁସୁମିତ,
ଦ୍ରୁମଦଳ-ଶୋଭିନୀ ଭାରତବର୍ଷ ??

ଇଏ କଣ ଇକ୍‌ବାଲଙ୍କର ସେହି
'ସାରେ ଜହାଁସେ ଅଚ୍ଛା' - ଭାରତବର୍ଷ ?
ଦ୍ୱିଜେନ୍ଦ୍ରଲାଲଙ୍କର ଇଏ କଣ
ଜଗନ୍ମୋହିନୀ, ଜଗଜ୍ଜନନୀ ଭାରତବର୍ଷ?
ନା,ସୁବ୍ରମଣ୍ୟ ଭାରତୀଙ୍କର
ମୁକ୍ତିଦାତ୍ରୀ, ଜୀବନଧାତ୍ରୀ ଭାରତବର୍ଷ ??

ଏ ପ୍ରଶ୍ନର ସମାଧାନ କରିବା ପୂର୍ବରୁ
ସଂଶୟର ରହସ୍ୟ-ଦୋଳିରେ
ଝୁଲୁ ଝୁଲୁ ମୁହିଁ,
ଶୁଭ୍ର-ସ୍ୱଚ୍ଛ-ଅମଳିନ
ଦୀର୍ଘ ଏକ କାଗଜର ଫର୍ଦ୍ଦ
ଆଜି ଏଠି ଦେଇଗଲି ଥୋଇ ;

ଯା!' ଉପରେ ଅନାଗତ ଆଗନ୍ତୁକ ଦଳ
ଆପଣାର ସୁନେଲି ସ୍ୱପ୍ନରେ
ଆଙ୍କିଦେବେ ନୂଆକରି
ଅପୂର୍ବ - ବିଚିତ୍ର,
ଅନ୍ୟ ଏକ ବର୍ଣ୍ଣୋଜ୍ଜ୍ୱଳ-
ଭାରତର ଦୀର୍ଘ ମାନଚିତ୍ର ।।



# କଥାକୁହ, ଆଖି ଖୋଲ,
# ମୋ ଦେଶର ହେ ଗଣଦେବତା !

ଗୋଟିଏ ନୁହେଁ
ଅସଂଖ୍ୟ ଦରପୋଡ଼ା ନାରୀ ଦେହର
ଖଣ୍ଡ ଖଣ୍ଡ ଗଳିତ ମାଂସର
ପଚା ଦୁର୍ଗନ୍ଧରେ
ଆଜି, ପ୍ରଦୂଷିତ ସମଗ୍ର ମୋ ଦେଶ ।
ଗୋଟିଏ ନୁହେଁ
ଅଗଣିତ ନିପୀଡିତା ନବବଧୂର
ଅସହାୟ ଆର୍ତ୍ତ ଆକୁତିରେ
ଆଜି, ଅବିରତ ମର୍ମରିତ ସମଗ୍ର ମୋ ଦେଶ ।।
ଏତେବେଳେ
କେଉଁ ମସ୍‌ନଦର ମଦିରା ମାୟାରେ
ବିଭୋର ହୋଇ ବସିରହିଚ
ସ୍ୱାର୍ଥସେବୀ ବୁଦ୍ଧିଜୀବୀ ଦଳ ??
ଆଜି, ଭୂସ୍ୱର୍ଗର ନରକପୁରୀରେ
ଶତ ଶତ ଜୀବନ୍ତ ପ୍ରେତର ଲୀଳା ;
ହସକୁରୀ କାଶ୍ମିରୀ ଗୋଲାପର
ସଜଫୁଟା କଅଁଳ ପାଖୁଡ଼ାରେ
ଆଜି, ଚକ୍ ଚକ୍ ତରବାରୀର
ଶୋଣିତ ଚୁମ୍ବନ ;
ଝେଲମ ଓ ଶତଲେଜ୍‌ର କୂଳେ କୂଳେ
କୋଷମୁକ୍ତ ଉଦ୍ଧତ କୃପାଣର
ଲହଲହ ଉଦଣ୍ଡ ନୃତ୍ୟ ।

ପତିତପାବନୀ ଗଙ୍ଗାର
ମଳିନ ଜଳରେ ଆଜି
ଶତ ଶତ ନରଘାତକର
ରକ୍ତରଂଜିତ ପାଗଳ ହାତର
ଅଦୃଶ୍ୟ ଟିପଚିହ୍ନ ।
ରାଜନୀତିର ଚତୁର ଦାବାଖେଳରେ ମତ୍ତ
ଜନଗଣ ମନର
ହେ ମହାମହିମ ମହାନାୟକଗଣ !
ଆଜି ଆପଣମାନେ କେଉଁଠି ??
କେଉଁଠି,
କେଉଁ ଘୃଣିତ ସ୍ୱାର୍ଥର ରଜତ ସିନ୍ଦୁକରେ
ସୁରକ୍ଷିତ ସୁବର୍ଣ୍ଣ ଫରୁଆ ଭିତରେ
ଲୁଚିରହିଚି
ଆପଣଙ୍କ ବିକଳ ବିବେକର
କଳା ଭଅଁର ?
କୋଟି କୋଟି ଅଭୁକ୍ତ ଓ ଅସହାୟ ଜୀବନର
ବିଚିତ୍ର ପଶାପାଲିରେ
ଆଜି ବେଶ୍ ଚାଲିଛି
ଆପଣଙ୍କର ଝିମିଟି ଖେଳ,
ଭୋକିଲା ମେରୁହାଡର
ପଶାକାଠି ଗଡୁଗଡୁ
ଅଦ୍ଭୁତ ଅଟ୍ଟହାସରେ
କମ୍ପି ଉଠୁଛି ଧରଣୀ,
ଫାଟି ପଡୁଛି
ଆଦିଗନ୍ତ ଆକାଶ-ପାତାଳ ।
କିନ୍ତୁ ହାର୍‌ଜିତ୍‌ର ପ୍ରଶ୍ନହିଁ ନାହିଁ ;
ଆଜି ଯିଏ ହାରୁଚି
କାଲି ହୁଏତ ସେ ଜିତିବ,

ବାଜିମାତ୍ କରି ଜିତିବ ,
ଆଉ ଜିତିଯିବା ପରେ
କଡାଗଣ୍ଡା କରି ଆଦାୟ କରିନେବ
ତା'ର ଯେତେସବୁ ବକେୟା ପାଉଣା ;

ଏବଂ ବହୁଦୂରେ
ଇନ୍ଦ୍ରପ୍ରସ୍ଥର ସୁରମ୍ୟ ରଙ୍ଗସଭାରେ
ଶୂନ୍ୟରେ ଝୁଲୁଚି ଯେଉଁ
ଝଲ୍‌ମଲ୍ ଆଶ୍ଚର୍ଯ୍ୟ ଝୁଲଣା
ସେଇଠି ହେବ ତା'ର ଅଭିଷେକ,
ଶୁଭ ଅଭିଷେକ ;
ମଦମତ୍ତ ସୁରାପାତ୍ରକୁ
ପରମ ଆହ୍ଲାଦରେ ଚୁମ୍ବନ କରୁକରୁ
ତହିଁରେ ସୃଷ୍ଟିହେବ ଯେଉଁ ତରଙ୍ଗ
ଯେଉଁ ଅପୂର୍ବ ତରଙ୍ଗ,
ସେହି ତରଙ୍ଗରେ ଟହଲି ଉଠିବ ମୋ'ଦେଶ
ହାୟ, ମୋର ହତଭାଗ୍ୟ ଦେଶ !!

ଦେଖ ଦେଖ,
'ଯାଜ୍ଞସେନୀ' ବିବସ୍ତ୍ରା ହେଉଚି ଦେଖ !
ଦେଖ ଆଜି ଭାଙ୍ଗିଯାଏ
ଶତଶତ 'ଚନ୍ଦ୍ରମାର ଚୁଡ଼ି',
ଧର୍ଷିତା, ଲୁଣ୍ଠିତା ହୁଏ
ପଥେଘାଟେ କେତେକେତେ
ଅସହାୟା ନିରନ୍ନା 'ଶବରୀ' ;
ଘରେ ଘରେ ଦାଉଦାଉ
ମରଣର ଡହଡହ ଚୁଲି ।।

ଦେଖ ଦେଖ ମୟଦାନବର
ହାତଗଢ଼ା ସ୍ୱପ୍ନପୁରୀ ସୁରମ୍ୟ ମହଲେ
ଛାଇଯାଏ ଛଳନାର ନୀଳ ଇନ୍ଦ୍ରଜାଲ,

ତଥାପି ପାହୁନି ରାତି ?
ଭାଙ୍ଗୁନାହିଁ ନିଦ ?
ହାୟ, ହାୟ, ଆତ୍ମମଗ୍ନ ସ୍ୱପ୍ନଜୀବୀଦଳ !!
ଦେଖ ଦେଖ,
ନ୍ୟାୟଦେବୀ ଅନପେକ୍ଷ ଆଖିର ପଟଳ
ଛିନ୍ନଭିନ୍ନ ହୋଇ ଆଜି ଲୋଟୁଛି ମାଟିରେ ;
ନ୍ୟାୟଦଣ୍ଡ ନଇଁଯାଏ
ନ୍ୟାୟର ଅମୃତକୁମ୍ଭ ବର୍ଷିଯାଏ
ମତ୍ତଗର୍ବୀ ଦୁର୍ଯ୍ୟୋଧନ,
ବ୍ୟଭିଚାରୀ ଦୁଃଶାସନ ଶିରେ ।।

ତଥାପି କି ଫିଟୁନାହିଁ ଆଖି
ରୁଦ୍ଧମୁଖେ ଫୁଟୁନାହିଁ କଥା ?
ହତଭାଗ୍ୟ ମୋ ଦେଶର
ହେ ଭାଗ୍ୟବିଧାତା !
କୋଟି କୋଟି ବାଣବିଦ୍ଧ
ହେ ଗଣ-ଦେବତା !!
କଥା କୁହ, ଟିକେ ଆଖି ଖୋଲ,
ନିମିଷକେ ଥରିଯିବ
ମଦମତ୍ତ କୌରବର
ଦୁଃଶାସନୀ ସ୍ୱପ୍ନର ମହଲ ।
ପଡ଼ିବ ପଡ଼ିବ ଖସି
ଆତ୍ମସେବୀ-ବୁଦ୍ଧିଜୀବୀ
ଛଳନାର ମୁଖା ;
କୁହ କୁହ, କଥା କୁହ
ଆଖି ଖୋଲ, ଖୋଲ ମୁହଁ
କୋଟି କୋଟି ଜନଗଣ
ହେ ମୋ ପ୍ରିୟ ସଖା !!



# ସ୍ୱପ୍ନର ଭାରତବର୍ଷ : କ୍ରୁଶବିଦ୍ଧ ଦେଶ

॥ ଏକ ॥

ବିଶାଳ ଭାରତବର୍ଷ
ଆହା, କେତେ ବିଷଣ୍ଣ-ବିମର୍ଷ
ଦେଖାଯାଏ ଆଜି,
ଏବଂ ତାର ପ୍ରସାରିତ ଦୀର୍ଘ ମାନଚିତ୍ର
ମନେହୁଏ କ୍ରୁଶବିଦ୍ଧ ଯୀଶୁଖ୍ରୀଷ୍ଟ ଭଳି ।

ବିସ୍ତାରିତ ଦୁଇ ବାହୁ
ଲମ୍ବିଅଛି ପୂର୍ବେ ଓ ପଶ୍ଚିମେ ,
ଯୁଗ୍ମପଦ ଯୁକ୍ତ ହୋଇ
ପ୍ରସରିଛି ଦାକ୍ଷିଣାତ୍ୟ ଦିଗେ ,
କୁମାରିକା ଅନ୍ତରୀପେ
ଛୁଇଁଅଛି ଶୋଣିତାକ୍ତ ଉତ୍ତାଳ ସମୁଦ୍ର ।

କଣ୍ଟକ-କିରୀଟଧାରୀ
ଉନ୍ନତ ମସ୍ତକ ତା'ର
ଈଷଦ୍ ପଡ଼ିଛି ଢ଼ଳି
ବହୁଦୂରେ ଶୀତାର୍ତ୍ତ ଉତ୍ତରେ
ହିମକାନ୍ତ ହିମାଦ୍ରିର
ନଭଶ୍ଚୁମ୍ବୀ ରକ୍ତାକ୍ତ ଶିଖରେ ॥

**॥ ଦୁଇ ॥**

ସାରା ଅଙ୍ଗ ବିଦ୍ଧ ତା'ର
ବକ୍ଷଦେଶୁ ଝରୁଛି ରୁଧିର,
କଣ୍ଟକର ତୀକ୍ଷ୍ଣତାରେ
ବିକ୍ଷତ ଯେ ସମଗ୍ର ଶରୀର ;
ଶୋଣିତେ ରଂଜିତ ହୁଏ
ସୀମାନ୍ତର ପଞ୍ଚନଦ ବାରି,
ବ୍ରହ୍ମପୁତ୍ର, ଗଙ୍ଗା ଓ କାବେରୀ,
ରକ୍ତେ ରକ୍ତେ ସିକ୍ତ ହୁଏ
କୃଷ୍ଣା ଆଉ ଗୋଦାବରୀ ତୀର,
ଆର୍ତ୍ତନାଦେ ଥରିଉଠେ ଭୂସ୍ୱର୍ଗ କାଶ୍ମୀର ॥

**॥ ତିନ ॥**

ରକ୍ତାକ୍ତ ଭାରତବର୍ଷ
କ୍ରୁଶବିଦ୍ଧ ଦେଶ,
ଅଙ୍ଗେ ଅଙ୍ଗେ ଜର୍ଜରିତ
ଆକୁମାରୀ-ହିମାଚଳ ସନ୍ତ୍ରାସର ବିଷ ।
ଧର୍ମାନ୍ଧ ଓ କ୍ଷମତାନ୍ଧ
ସ୍ୱାର୍ଥାନ୍ୱେଷୀ ବଣିକ - ଦଲାଲ୍ ,
ନିର୍ବିଚାରେ-ନିର୍ବିକାରେ
କରେ ନିତି-କୋଟି କୋଟି
ନିରୀହ ଓ ଅର୍ଦ୍ଧଭୁକ୍ ମଣିଷ ହଲାଲ୍ ।

ସର୍ବଭୁକ୍ ରାଜନୀତି ଶକ୍ତ ହାତୁଡ଼ିରେ
ନିର୍ମମ ନିର୍ଦ୍ଦୟ ଭାବେ ଏକ ପରେ ଏକ
କ୍ରୁଶକାଠେ କଣ୍ଟା ପରେ କଣ୍ଟା ଚାଲେ ପିଟି,
ହୃଦୟରୁ ରକ୍ତ ଝରେ
ନୟନରୁ ସ୍ୱପ୍ନ ସରେ
ମୋ ସ୍ୱପ୍ନର ହିରଣ୍ମୟ ଭାରତ କେଉଁଠି ??

## ॥ ଚାରି ॥

ଆମେ କି ଦେଖୁଚୁ ସେହି
ରଶ୍ମିଝରା, ବିଶ୍ୱମ୍ଭରା ଭାରତବର୍ଷକୁ ?
ଶତାବ୍ଦୀର ସ୍ୱପ୍ନ ଯାର ଦିନେ
ନୀଳକାନ୍ତ ଦିଗନ୍ତ -ନୟନେ
ମହାକାଶ ଅନନ୍ତ ଅୟନେ
ସୂର୍ଯ୍ୟକଣା ହୋଇ ସିନା ଝରୁଥିଲା
ମେଘେ ମେଘେ, ଅରଣ୍ୟେ ଅରଣ୍ୟେ,
ଶସ୍ୟକଣା ହୋଇ ଦିନେ
ଝୁରୁଥିଲା ଶ୍ୟାମକାନ୍ତ କେଦାରେ କେଦାରେ
ବର୍ଣ୍ଣିଳ ଉଦୟ-ଉଷା
ସ୍ୱର୍ଣ୍ଣିଳ ସନ୍ଧାରେ ;
ଆଶାର ହୀରକ କଣା ହୋଇ ପୁଣି
ଝରୁଥିଲା ଦିନେ
ଆଶାୟିତ ଅଜସ୍ର ଆଖିରେ ;
ସୁମହାନ ଜୀବନର
ସୁବିପୁଳ ଅନନ୍ତ ବିସ୍ତାରେ ॥

## ॥ ପାଞ୍ଚ ॥

କାହିଁ ସେ ଭାରତବର୍ଷ,
କେଉଁଠାରେ ହଜିଗଲା ତାହା ?
କାହିଁ ସେ ଭାରତବର୍ଷ,
କେଉଁ ଦିଗେ ହରାଇଲା ରାହା ?
କାହିଁ କେଉଁ ମହା ଅନ୍ଧକାରେ
ସ୍ୱପ୍ନର ଭାରତ ମୋର
ଛିନ୍ନପକ୍ଷ ପକ୍ଷୀ ସମ ଝରେ !!

ବ୍ୟାକୁଳିତ ନୟନର ଲୁହେ ,
ଆକୁଳ ଆକୁତି ତାର
ଭାସିଯାଏ ମହାଶୂନ୍ୟେ
ବ୍ୟର୍ଥତାର ପବନର ସୁଏ ।

ଦିଗନ୍ତେ ଦିଗନ୍ତେ ଶୁଭେ
ଘାତକର କ୍ରୂର ଅଟ୍ଟହାସ ;
ଯନ୍ତ୍ରଣାରେ ଭରିଉଠେ
କ୍ରନ୍ଦନରେ ଥରିଉଠେ
ଭାରତର ନଦନଦୀ
ବନଗିରି, ଜନପଦ
ମାଟି ଓ ଆକାଶ ।।

॥ ଛଅ ॥

କାହିଁ ସେ ଭାରତବର୍ଷ
ସୂର୍ଯ୍ୟସ୍ନାତ, ସ୍ୱପ୍ନର ଭାରତ ?
ଯାହାର ମଧୁର କଣ୍ଠ ଶୁଣିବାକୁ ଚାହିଁଥିଲୁଁ
ସୁମହାନ ଜୀବନର
ସୃଜନର ଲଳିତ ସଂଗୀତ ।

ପଢ଼ିବାକୁ ଚାହିଁଥିଲୁଁ
ଅଗଣିତ ଅନାବିଳ ହୃଦୟର ଭାଷା,
ଦେଖିବାକୁ ଚାହିଁଥିଲୁଁ
ସଂଧ୍ୟାର ଅନ୍ଧାର ନୁହେଁ
ଲାସ୍ୟମୟୀ - ହାସ୍ୟମୟୀ
ମେଘମୁକ୍ତ, ଅରୁଣିତ ଉଦୟର ଉଷା ।

ଗଢ଼ିବାକୁ ଚାହିଁଥିଲୁ
ମଣିଷ ମଣିଷ ସହ
ଚିରନ୍ତନ ବଂଧୁତାର
ଦୀର୍ଘତମ ସଂଯୋଗର ସେତୁ ;

ଲଘିବାକୁ ଚାହିଁଥିଲୁଁ
ଭାଙ୍ଗିବାକୁ ଚାହିଁଥିଲୁଁ
ଯେତେ ଯେତେ କ୍ଷୁଦ୍ରତାର
ଯେତେ ହୀନ ଉଗ୍ରତାର
ବିଭେଦର ହେତୁ ।।

ଚାହିଁଥିଲୁଁ ସାମ୍ୟ, ଶାନ୍ତି,
ଚାହିଁଥିଲୁଁ ପୁଣି ସ୍ୱାଧୀନତା ;
ଭୀଷଣ ଭାଷଣ ନୁହେଁ
ଶୋଷଣ ତ୍ରାସନ ନୁହେଁ
ଚାହିଁଥିଲୁଁ ମୁକ୍ତ ହୋଇ
ପରସ୍ପରେ ଯୁକ୍ତ ହୋଇ
ରଚିବାକୁ ଜୀବନର
ମହାକାବ୍ୟ, ସୃଷ୍ଟିର ସଂହିତା ।।

ଶିଖିବାକୁ ଚାହିଁଥିଲୁଁ
ବଞ୍ଚିବାର ସୁକୁମାର
ଅପରୂପ ରସମୟ କଳା;
ଚାହିଁଥିଲୁଁ ବାନ୍ଧିବାକୁ
ଆମ ନଗ୍ନା ଯାଜ୍ଞସେନୀ-
ମୁକ୍ତବେଣୀ, ବିସ୍ରସ୍ତ ମେଖଳା ।

ଛୁଇଁବାକୁ ଚାହିଁଥିଲୁଁ
ଚନ୍ଦ୍ର-ସୂର୍ଯ-ଗ୍ରହ-ତାରା
ଆମ ବୁଦ୍ଧି, ବାହୁବଳେ
ବଳିଆର ହାତେ ;
ରଖିବାକୁ ଚାହିଁଥିଲୁଁ
ଆମ ଦୃପ୍ତ ପଦଚିହ୍ନ
ସୁବିସ୍ତୀର୍ଣ୍ଣ ମହାକାଳ -
ଦୀର୍ଘ ରାଜପଥେ ।।

କିନ୍ତୁ ଆଜି,
କେଉଁ ଶକ୍ତ ହାତୁଡିର ପ୍ରହାର ବା ବାଜି
ସ୍ୱପ୍ନର ମୀନାର ଆମ
ଖଣ୍ଡ ଖଣ୍ଡ ହୋଇ ଯାଏ ଭାଜି ?

ଭାବୁ ବସି ଏକାନ୍ତରେ
ହାୟ ଆଜି କେତେ ଦୂରେ
ସ୍ୱପ୍ନର ଭାରତ ଆମ
କେତେ ଦୂରେ,
କାହିଁ କେତେଦୂରେ !

ତଥାପି ତା' ସ୍ୱପ୍ନଦେଖୁ
ତା'ପାଇଁ କବିତା ଲେଖୁ
ବ୍ୟଥାବିଦ୍ଧ ହୃଦୟର
ଝରଝର ରକ୍ତର ଅକ୍ଷରେ ।।



# 'ସ୍ୱାଧୀନତା' ତୁମ ହେଉ ନବ ଅଭିଷେକ

॥ ଏକ ॥

ତୁମକୁ ଆଜି ମୁଁ ବନ୍ଦନା କରେ
ସ୍ୱାଧୀନତା ମୋର ପ୍ରିୟ !
ଅଭିନନ୍ଦନ ନିଅ ତୁମେ ମୋର
ଅଭିନନ୍ଦନ ନିଅ ।
ଘେନ ଆଜି ମୋର ଲୋହିତ ଅର୍ଘ୍ୟ
ବୁକୁର ରକ୍ତ-ଧାରେ
ଆଖିର ଅଶ୍ରୁ -ଗାରେ ॥

॥ ଦୁଇ ॥

ମନେ ପଡ଼େ ମୋର ମନେ ପଡ଼େ ଆଜି
ପଚାଶ ବର୍ଷ ତଳେ
ସେହି ଅଗଷ୍ଟ ପନ୍ଦର ରାତି
ଘନ ଅନ୍ଧାର କୋଳେ
ମୋ ଦେଶର ପ୍ରତି ଗ୍ରାମେ ଓ ନଗରେ
ହର୍ମ୍ୟ-କୁଟୀର ଦ୍ୱାରେ
ତୁମେ ଯେବେ ଆସି କରାଘାତ କଲ
ତୁମରି ପରଶ ଲାଗି

ହିମାଳୟ ଠାରୁ କନ୍ୟାକୁମାରୀ
ସହସା ଉଠିଲା ଜାଗି ;
ଜାଗିଲା ଆକାଶ, ଜାଗିଲା ଧରଣୀ
ପବନେ ଉଡ଼ିଲା ନେତ
ସ୍ୱାଧୀନ ଭାରତ ନେତ
ପ୍ରତିଟି ମନର ନନ୍ଦନ-ବନେ
ଫୁଟିଗଲା ପାରିଜାତ
ସ୍ୱପ୍ନର ପାରିଜାତ ।

ଶତେକ ଯୁଗର ପରାଧୀନତାର
ନିଗଡ଼ ପଡ଼ିଲା ଟଳି
ଶତେକ ପ୍ରାଣର ଦିଗ୍‌ବଳୟରେ
ଆଶାର ଆଲୋକ ଜାଳି
ମୁକ୍ତିର ନୂଆ ରକ୍ତ-ସୂର୍ଯ୍ୟ
ଉଠିଲା ଉଠିଲା ଜଳି ।।

**।। ତିନ ।।**

ସେହି ଅରୁଣର ଲୋହିତ କିରଣେ
ଚହଟିଲା ସାରା ଦେଶ
ଧରିଲା ନୂତନ ବେଶ ;
ଗଙ୍ଗା, ଯମୁନା ଉଚ୍ଛୁଳି ଉଠିଲେ
ଉଚ୍ଛୁଳି ଉଠିଲା ପୁଣି
ଗୋଦାବରୀ ନୀଳ ପାଣି,
ଚହଲି ଉଠିଲା ବ୍ରହ୍ମପୁତ୍ର ,
ସିନ୍ଧୁନଦର ଜଳ
ମହାନଦୀ ଆଉ କୃଷ୍ଣା-କାବେରୀ ବେଣୀ ।।

## ।। ଚାରି ।।

ଗଗନେ ପବନେ ମନ୍ଦ୍ରିତ ହେଲା
‘ଜୟ ସ୍ୱାଧୀନତା ଜୟ’
ବନ୍ଧନ କାଟି ଉଠିଲା ଭାରତ
ତୁଟିଲା ମନରୁ ଭୟ ।
ନବୀନ ଛନ୍ଦେ, ନବୀନ ସ୍ୱପ୍ନେ ମାତି
ନବ ଉତ୍ସାହେ ଜାଗିଲା ମହାନ ଜାତି
ଯୁଗାନ୍ତରର ଶୃଙ୍ଖଳ ତେଜି
ତେଜି ଶତ ଅବସାଦ
ଦୃପ୍ତଚରଣେ ନବ ଉନ୍ମାଦେ ଥରି
ବଢ଼ାଇଲା ସିଏ ଆଗକୁ ଆଗକୁ
ଆହୁରି ଆଗକୁ ପାଦ ।।

## ।। ପାଞ୍ଚ ।।

ଆଜି ଏତେବେଳେ ମନେପଡ଼େ ମୋର
ପ୍ରିୟ ମୋର ସ୍ୱାଧୀନତା !
ତୁମ ପାଇଁ କେତେ ବୁକୁରୁ ରୁଧିର
ଅକାତରେ ଗଲା ଝରି
କେତେ ଅଶ୍ରୁଳ ଆଖିର ଚାହାଣି
ନୀରବେ କହିଲା କଥା ।

କେତେ ‘ଇଞ୍ଚୁଡ଼ି’ ‘ଇରମ’ର ମାଟି
କେତେ ‘ଜାଲିଆନାବାଗ’
ସ୍ମୃତିର ଶୁଭ୍ର ମର୍ମ୍ମର ପରେ
ରଖିଲେ ରକ୍ତଦାଗ ।
‘ଚଷାଖଣ୍ଡ’ର ଶାନ୍ତ, ସରଳ
ଶ୍ୟାମଳ ପଲ୍ଲୀଭୂଇଁ

ଅମର ସହୀଦ ବାଘା ଯତୀନର
ଶୋଣିତରେ ଅବଗାହି
ଯୁଗଯୁଗ ପାଇଁ ଗଲା ଯେ ଧନ୍ୟ ହୋଇ ।

ପ୍ରିୟ ମୋର ସ୍ୱାଧୀନତା !
ତୁମ ପାଇଁ ଜଳି ଉଠିଲା କେତେ ଯେ
'ବାଜିରାଉତ'ର ଚିତା ।
ଆଦିବାସୀ ନେତା କେତେ 'ଲକ୍ଷ୍ମଣ'
ଜୀବନ କରିଲେ ପାଣି
କେତେ 'ଉଦ୍ଧାମ' 'ଭଗତ ସିଂହ'
କେତେ 'ଖୁଦିରାମ' ପୁଣି
ବକ୍ଷ ଶୋଣିତେ ରୁଧିର-ଅର୍ଘ୍ୟ ରଚି
କାଳ କାଳ ପାଇଁ ଲେଖିଦେଇଗଲେ
ମହାମୁକ୍ତିର ଲୋହିତ ସୂର୍ଯ୍ୟ-ସୂଚୀ ।

**।। ଛଅ ।।**

ମୁଠାଏ ଲୁଣରେ ଅଧିକାର ପାଇଁ
ଦାଣ୍ଡିର ଅଭିଯାନ
ଭରିଲା ଜାତିର ଭଗ୍ନ-ହୃଦୟେ
ଜୀବନର ସ୍ୱାଭିମାନ ।
ମହାନାୟକ ସେ ନେତାଜୀର ଖର-
ଖଡ୍‌ଗ-କୃପାଣ ଝଳି
ସୀମାନ୍ତ ପଥେ ବିଦ୍ୟୁତ୍ ସମ ଜଳି
ଦୁର୍ବଳ-ଭୀରୁ ବକ୍ଷରେ ଦେଲା
ମୁକ୍ତି-ଅନଳ ଜାଳି ।
'ସୁଦର୍ଶନ'ର ପରି
ହିମାଚଳ ଠାରୁ ସୀମାଚଳ ଯାଏ
ଚରଖା-ଚକ୍ର ଘୂରି

କାଟି କାଟି ଗଲା ଶତବର୍ଷର
ବିଦେଶୀ ଶାସନ ଫାଶ
ଲହୁରେ ଲହୁରେ ରଚନା ହୋଇଲା
ନୂଆ ଏକ ଇତିହାସ
ନବ ଭାରତର ମୁକ୍ତିର ଇତିହାସ ।।

**।। ସାତ ।।**

ସେଦିନର ସେହି ସ୍ୱପ୍ନଭିଜା ଏ
ମୁଗ୍‌ଧ ନୟନ ତୀରେ
କିନ୍ତୁ ଆଜି କି ଚିତ୍ର ଦେଖେ ମୁଁ
ପଚାଶ ବର୍ଷ ପରେ ?
ଜୀବନ-ବିଳାସୀ, ମୁକ୍ତି-ଲାଳସୀ କବି
ଦେଖେ ମୁହିଁ କେଉଁ ନବଭାରତର
ବର୍ଣ୍ଣିଳ ଚାରୁ ଛବି ?

ମୁଁ ଦେଖୁଛି ମୋର ସମ୍ମୁଖ ଭାଗେ
ଲମ୍ୱି ଯାଇଛି ଦୂରେ-
ମାଇଲ ମାଇଲ ବ୍ୟାପୀ
କୂଟଚକ୍ରୀର ହୀନ ସ୍ୱାର୍ଥର
ବିସ୍ତୃତ ରାଜପଥ,
ଗଡ଼ି ପାରୁନାହିଁ ଆଗକୁ ଆଗକୁ
ଜନତାର ଜୟରଥ ।
ଭ୍ରାତୃବିବାଦେ ମତ୍ତ-ବିକଳ
ରକ୍ତ-ପାଗଳ ଜାତି
ଧର୍ମ୍ମ ନାମରେ, ଗୋଷ୍ଠୀ ନାମରେ
ଅନ୍ଧ ଆବେଗେ ମାତି
ଦିନର ଦୀପ୍ତ ଆଲୋକେ ଚଳାଏ
ଭାଇରେ ଶାଣିତ କାତି ।।

## ।। ଆଠ ।।

ଆକାଶଚୁମ୍ବୀ ନୀତିର ତୁଙ୍ଗ
ଦେଉଳ ପଡୁଛି ଭାଙ୍ଗି
ଦୁର୍ନୀତି-ନଦୀ କୂଳେ କୂଳେ ଆଜି
ଜଳୁଛି ଆତସବାଜି ।
ଶୋଷଣବାଦର ତଥାପି ହୋଇନି ଶେଷ ,
ସ୍ୱଜନ ପୋଷଣେ,
ଶୋଷଣ - କଷଣେ
ମତ୍ତ ଏ ସାରା ଦେଶ ।

ଶ୍ରମର ମୂଲ୍ୟ କିଏବା ପାଉଛି
କିଏବା ଦେଉଛି କାହିଁ ?
ଲୁଣ୍ଠିତ ଧନେ କୀର୍ତ୍ତି-ମୀନାର
ଯାଉଛି ଆକାଶ ଛୁଇଁ ।
କ୍ଷୁଧାର ଖଡ୍‌ଗେ ବିଦ୍ଧ ଜଠର
ହୃଦୟେ ଅଗ୍ନି ଜଳେ
ଆସନ କଳିରେ ମତ୍ତ ନେତାର
ରାଜନୀତି-ପଶା ଗଡେ
ମହାଭାରତର ଶୋଣିତସିକ୍ତ
ସ୍ନିଗ୍‌ଧ ଚଟାଣ ପରେ ।।

## ।। ନଅ ।।

ଆଜି ଏତେବେଳେ କୋଟି ଜନତାର
ଚିର ଈପ୍‌ସିତ ପ୍ରିୟ
ଶତ ସହୀଦର ରକ୍ତେ ପଖଳା
'ସ୍ୱାଧୀନତା' ତୁମେ କୁହ !
କେଉଁ ଧର୍ଷିତା ଲୁଣ୍ଠିତା ନାରୀ
ଛିନ୍ନ ବସନ ତଳେ
କେଉଁ ଅନାହାରୀ ଶିଶୁ ସନ୍ତାନ
ଆର୍ତ୍ତ ଆକୁଳ ସ୍ୱରେ

ଦୂର ରାଜଘାଟ ପୁଣ୍ୟପୀଠେ ବା
ବୋଧିଦ୍ରୁମର ତଳେ
ଚପାଇ ଆପଣା ଦରଦୀ ବୁକୁର
ନିଖିଳ ମର୍ମ୍ମଦାହ
ତୁମେ କି ଢ଼ାଳୁନ ଗୁମୁରି ଗୁମୁରି
ରକ୍ତ-ଅତୀତେ ସୁମରି ସୁମରି
ଆଖିର ତପ୍ତଲୁହ ??

॥ ଦଶ ॥

ତୁମେ ଏତେବେଳେ ତର୍ଜନୀ ଚାଳି
ଦେଖାଇ ଦିଅହେ ବାଟ,
ଉତ୍ତାନପାଦେ ଆଗକୁ ଯିବାର ବାଟ;
କହିଦିଅ ପୁଣି କାନେ କାନେ ଆଜି
ଭିକ୍ଷାଝୁଲିରେ କେବେ
ଚିରଦିନ ପାଇଁ ପୂରେନି କାହାରି
ଶୂନ୍ୟ-ଭୋକିଲା ପେଟ ।

'ସ୍ୱାଧୀନତା' ନୁହେଁ ହର୍ମ୍ୟବାସୀର ଖାଲି
ରାଜନୀତି ନୁହେଁ ସ୍ୱାର୍ଥ-ଦଲାଲି
ପୁଞ୍ଜିର ପଶାପାଲି ।
'ମୁକ୍ତି' ନୁହଁଇ ପୋଥିର ଗୋପନ ତତ୍ତ୍ୱ
'ପ୍ରଗତି' ନୁହଁଇ ନଥିର ଅଳୀକ ତଥ୍ୟ,
ଘର୍ମଜୀବୀର ସମ ଅଧିକାରେ
ଦୀନ-ଦଳିତର ଜୀବନେ ହେଉ ତା' ସତ୍ୟ ।
ହେଉ ଏ ଦେଶର ସିଂହାସନରେ
ମହାଜନତାର ନବତମ ଅଭିଷେକ,
'ସ୍ୱାଧୀନତା' ତୁମେ ଅନ୍ଧାର ତଳୁ
ଆଉଥରେ ଶିର ଟେକ ॥



# ଭାରତବର୍ଷ

ଦିନେ ଏଠି
ନୀଳକାନ୍ତ - ମଣି ସମ
ଉଜ୍ଜ୍ୱଳ ଦିଗନ୍ତଛୁଆଁ ଶାନ୍ତ ଆକାଶରେ
ବିଚିତ୍ର ଭଙ୍ଗୀରେ
ଉଡିଉଡି ବୁଲୁଥିଲେ
ସଂଖ୍ୟାହୀନ ଶୁଭ୍ର ଶଙ୍ଖଚିଲ ;
ଆଜି କିନ୍ତୁ,
ସେମାନେ ସବୁ ଗଲେ ବା କୁଆଡ଼େ ?
ଏବେ ଏଠି
ଦଳଦଳ ଗୃଧ୍ରର ରାଜୁତି,
ମାଂସଲୋଭୀ ଈଗଲର
ଏଣେ ତେଣେ ଅବାଧ ଉଡାଣ,
ଏବଂ ସେମାନଙ୍କ
ନିରୁଙ୍କୁଶ ଅବାଧ୍ୟ ଶାସନ ॥

ଦିନେ ଏଠି
ପୁଣ୍ୟତୋୟା ନଦୀରେ ନଦୀରେ
ସୀମାହୀନ ସାଗରେ ସାଗରେ
ବହୁଥିଲା ଜଳ
ନୀଳନୀଳ ସ୍ୱଚ୍ଛ ଅନାବିଳ ।
ଆଜି ତାହା ହଜିଲା କୁଆଡ଼େ ?

ଏବେ ଏଠି ଖାଲି
ଅବିରତ ଖେଳିବୁଲେ
ଛଳଛଳ ଲୁହ ଆଉ
ଲହଲହ ଲହୁର ଲହରୀ ॥

ଦିନେ ଏଠି
ଛାୟାଘନ ସବୁଜ ପଲ୍ଲୀରେ,
ସହର ଓ ନଗରର
ଜନାକୀର୍ଣ୍ଣ ଧୂସର ଛାତିରେ
ଚାଲିଥିଲା ଦିନରାତି
ଶଂକାହୀନ କୋଟିକୋଟି
ମଣିଷର ଦୀର୍ଘ ଜୟଯାତ୍ରା ;
ଆଜି କିନ୍ତୁ
ସେ ନିରୀହ ଶ୍ରମଜୀବୀ ମଣିଷର ମନେ
ଭରିଦେଲା ଭୟ କିଏ ?
ବିଶ୍ୱାସରେ ମିଶାଇଲା ବିଷ ?
ହରିନେଲା ପ୍ରାଣପାତ୍ରୁ ସ୍ୱପ୍ନର ପୀୟୂଷ ?
ଏବେ ଏଠି ଖାଲି
ନିତିନିତି ନିର୍ଲ୍ଲଜ୍ଜର ସ୍ୱାର୍ଥର ବନ୍ଦନା,
କ୍ଷମତାର ଜୟଗାନେ
କୂଟଚକ୍ରୀ ବିଷଧର
ତୋଳେ ତାର
ଲହଲହ ସମୁଦ୍ୟତ ଫଣା ॥

ଅଦ୍‌ଭୁତ ଭାରତବର୍ଷ ତଥାପି ବଞ୍ଚିଛି,
ତଥାପି ତା' ଢ଼ଳଢ଼ଳ
ଉଦ୍‌ବେଳିତ ଅଶ୍ରୁଜଳ-
ସମୁଦ୍ରର କୋଳେ

ସ୍ୱପ୍ନର ତରଙ୍ଗ ଖେଳେ,
ଖେଳେ ପୁଣି ଆଗନ୍ତୁକ ଶତାବ୍ଦୀର
ଶୁଭ୍ର - ନୀଳ ଆଲୋକର ବୀଚି ।

ଅଦ୍‌ଭୁତ ଭାରତବର୍ଷ,
ମୋ ଆତ୍ମାରେ ସବୁଜ ବିଶ୍ୱାସ
ଭରି ମୁଁ ଦେଖୁଛି ତାକୁ ;
ମୋ ଦେହରେ ତାହାର ନିଃଶ୍ୱାସ
ସଞ୍ଚାରିତ ହୁଏ ପ୍ରତିକ୍ଷଣେ,
ମୋ ନିଃଶ୍ୱାସ ମିଶେ ପୁଣି
ତା' ଦେହରେ ହିଲ୍ଲୋଳିତ ପବନେ ପବନେ ।

ଆଜି ନହେଲେ ବି କାଲି
ତା'ଆକାଶେ ଦିନେ
ଡେଣାମେଲି ଶୁଭ୍ର ଶଙ୍ଖଚିଲ
ଆଣିବ ଆଣିବ ଡାକି
ଆଗାମୀର ସୁବର୍ଣ୍ଣ ସକାଳ
ମନେ ଆସେ ଅଶା ;
ବଚିତ୍ର ଭାରତବର୍ଷ
ବିଚିତ୍ର ତା ହୃଦୟର ଭାଷା ।

ବିଚିତ୍ର, ବିଚିତ୍ର ତା'ର
ସବୁ ଯେ ବିଚିତ୍ର ;
ଶାନ୍ତ ଓ ଅଶାନ୍ତ ପୁଣି
ସ୍ଥିର ଓ ଅସ୍ଥିର ବହୁ
ଚିତ୍ରେ ଚିତ୍ରେ ଅଙ୍କିତ ମୋ
ହୃଦୟରେ ଚିରକାଳ
ସେ ବିଚିତ୍ର ଭାରତର ଦୀର୍ଘ ମାନଚିତ୍ର ।।



# ଭାରତ ଆବିଷ୍କାର

ଭାରତ ହେ ମୋର ଜନନୀ ଭାରତ, ତୋତେ ମୁଁ ଖୋଜୁଛି ଆଜି
ଯୁଗ ଯୁଗ ଧରି ଯେତେ ମୁଁ ଖୋଜିଛି, ସେତେ ତୁ ଯାଇଛୁ ହଜି ।
ଖୋଜିଛି ମୁଁ ତୋତେ ହିମାଚଳ ଚୂଳେ
ଭାରତ-ସାଗର ଜଳର ଅତଳେ
ରାଜପୁତାନାର ମରୁ-ପ୍ରାନ୍ତରେ,
ତଥାପି ପାଇନି ଖୋଜି,
ଭାରତ ହେ ମୋର ପ୍ରାଣର ଭାରତ, ଖୋଜୁଛି ତୋତେ ମୁଁ ଆଜି ।।

ବହୁଦିନ ତଳେ ଖୋଜିଥିଲି ତୋତେ ସିନ୍ଧୁର ତଟେ ତଟେ
ମହେଞ୍ଜୋଦାରୋ, ହରପ୍ପା କୋଳେ, ଗଙ୍ଗାର ଘାଟେ ଘାଟେ ।
ବ୍ରହ୍ମପୁତ୍ର -ନଦୀ ତୀରେ ତୀରେ
କୃଷ୍ଣା-କାବେରୀ ଗୋଦାବରୀ ନୀରେ
ନୀଳଗିରି ନୀଳ ଶଇଳର ଶିରେ
ବିନ୍ଧ୍ୟର ଭାଲପଟେ,
ଖୋଜିଥିଲି ତୋତେ ବହୁଦିନ ତଳେ ସିନ୍ଧୁର ତଟେ ତଟେ ।।

ଶୁଣିଥିଲି ତୋର ସ୍ୱର ଝଙ୍କାର କୋଟି ମଣିଷର ଗାନେ
ଶତ ବିହଗର ମଧୁ କଳରବେ, ଝରଣାର କୁଳୁତାନେ ।
ଶିଶୁ ଦରୋଟିର ମଧୁମୟ ଭାଷେ
ତରୁଣୀର ଚାରୁ ନୟନ ଆଭାସେ
ଗୋପାଙ୍ଗନାର ପ୍ରୀତିଭରା ରାସେ
ଯମୁନାର ନୀପବନେ,
ଶୁଣିଥିଲି ତୋର ମଧୁ ଝଙ୍କାର କୃଷ୍ଣର ବେଣୁ -ତାନେ ।।

ଋଷିକଣ୍ଠର ଆଦି ଓଁକାରେ ହୋମ - ଧୂମାନଳେ ମୁହିଁ
ଖୋଜିଥିଲି ତୋତେ ସ୍ୱର୍ଣ୍ଣ-ସକାଳେ ରଶ୍ମିରେ ଅବଗାହି ।
ହିମାଚଳ ଚୂଳ ଧବଳ ତୁଷାରେ
କନ୍ୟାକୁମାରୀ ଅରୁଣ ଉଷାରେ
ଗାଙ୍ଗେୟ ଭୂମି ଶ୍ୟାମଳ ଭୂଷାରେ
ହସୁଥିଲୁ ଯେବେ ତୁହି,
ପାଇଥିଲି ତୋର ପରିଚୟ ସେବେ ଆଦ୍ୟ ପ୍ରଭାତେ ମୁହିଁ ।।

ମହାଭାରତର କୁରୁସଭା ତଳେ ପାଞ୍ଚାଳୀ ଆଖି-ଜଳେ
ଆଗାମୀ ଦିନର ସମର-ବହ୍ନି ଜଳୁଥିଲା ଯେତେବେଳେ,
ସେତେବେଳେ ଥରେ ଖୋଜିଥିଲି ତୋତେ,
ଆଉଥରେ ପୁଣି ପୁଷ୍ପକ - ରଥେ
ଲାଞ୍ଛିତା ସୀତା - ଉଷ୍ଣ ଲୋତକେ
ଅଶ୍ରୁଳ ହାହାକାରେ
ଖୋଜିଥିଲି ତୋତେ ଜନନୀ ଭାରତ, ଖୋଜିଥିଲି ସେତେବେଳେ ।।

ଖୋଜିଛି ମୁଁ ତୋତେ କଂସ-କାରାରେ, ରାବଣ ବନ୍ଦୀଶାଳେ
ମହିଷାସୁରର ଅତ୍ୟାଚାରରେ ତ୍ରସ୍ତା ଧରଣୀ କୋଳେ ।
ଦୁର୍ଯ୍ୟୋଧନର ଗଦା-ହୁଂକାରେ
ସବ୍ୟସାଚୀର ଧନୁ-ଟଙ୍କାରେ
କୁରୁକ୍ଷେତ୍ରର ରଣ-ଝଙ୍କାରେ
ଯୁଗେ ଯୁଗେ, କାଳେ କାଳେ,
ଖୋଜିଛି ମୁଁ ଶତ ସିଂହାସନର ଉତ୍‌ଥାନ-ପତନରେ ॥

ରାଜଗିରି ତଳେ ଖୋଜିଥିଲି ତୋତେ, ମଗଧର ପଥେ ପଥେ
ଅଶୋକର ଶିଳାଲିପିରେ ଲିପିରେ, ଖାରବେଳ ଜୟରଥେ ।
ଧଉଳିଗିରିରେ ରଣ-ପ୍ରାନ୍ତରେ
ଗୋଲକୁଣ୍ଡାର ଦୁର୍ଗ-ଶିବିରେ
ଶତ ଶତ ବୀର ଖର କରବାଳେ
ପଲାସୀ ଓ ପାନିପଥେ,
ଖୋଜିଛି ମୁଁ ତୋତେ, ହେ ଭାରତ ମୋର ଦୀପ୍ତ ପଲକପାତେ ॥

ତାଜମହଲର ଶ୍ୱେତ ମର୍ମରେ, ଅଜନ୍ତା-ନଟୀ ଛନ୍ଦେ
କୋଣାରକ କାରୁ ଲଳିତ ବିଳାସେ,ନର୍ତ୍ତକୀ ନୀବିବନ୍ଧେ ।
‘କଥାସରିତ’ର କାହାଣୀକଳାରେ
‘ମହାଜାତକ’ର ଗଳ୍ପମାଳାରେ
‘ହିତୋପଦେଶ’ର କଥାରେ କଥାରେ
ଅଦ୍ଭୁତ ମହାନନ୍ଦେ
ଖୋଜିଛି ମୁଁ ତୋତେ ଯୁଗ ଯୁଗ ଧରି ନବ ରୂପ-ରସ-ଛନ୍ଦେ ॥

ବାଣଭଟ୍ଟର 'କାଦମ୍ବରୀ'ରେ, କାଳିଦାସ-'ମେଘଦୂତେ'
'ଗୀତ ଗୋବିନ୍ଦ' ଲଳିତ ଛନ୍ଦେ, ଚାରଣ-କବିର ଗୀତେ,
'ଗୀତାଞ୍ଜଳି'ର ପ୍ରତି ଅକ୍ଷରେ
ଗୁରୁ ତାନ୍‌ସେନ୍ ରାଗ-ଝଙ୍କାରେ
ମୀରା-ଭଜନର ମଧୁର ଲହରେ
କେତେ ଯେ ସନ୍ଧ୍ୟା-ପ୍ରାତେ
ଖୋଜିଅଛି ମୁହିଁ ବ୍ୟାକୁଳ ହୃଦୟେ, ଖୋଜିଅଛି ମୁହିଁ ତୋତେ ।।

କନ୍ଧକାମିନୀ କୁସୁମ-ଜୁଡ଼ାରେ, ବନବାସିନୀର ଗାନେ
ଲୋକସଙ୍ଗୀତ ଲହରେ ଲହରେ ବଂଶୀର ମଧୁତାନେ,
ମାଦଳର ତାଳେ, କେନ୍ଦରା ସୁରେ
ଗ୍ରାମ୍ୟବଧୂର ଚିତା-ମୁରୁଜରେ
ଶତ ଭାଷା, ଶତ ଲିପି-ଅକ୍ଷରେ
ଖୋଜିଛି ମୁଁ ମନେ ମନେ,
କାଳ କାଳ ଧରି ତୋତେ ଅନୁସରି ଚାଲିଛି ତୋ ସନ୍ଧାନେ ।।

ଶାରଦ ନିଶିରେ, ଶୀତର ଶିଶିରେ, ବୈଶାଖୀ କାଳଝଡ଼େ
ନବବସନ୍ତ ବକୁଳ-ମୁକୁଳେ, ଫଗୁଣର ଫଗୁ-ଖେଳେ,
ଆଦ୍ୟ- ଆଷାଢ଼ ଧାରା -ବାରିପାତେ
ଖୋଜିଛି ମୁଁ ତୋତେ ରାମଗିରି ପଥେ
ଦେଖିଛି ତୋ ରୂପ ମୁଗ୍‌ଧ-ଚକିତେ
ସ୍ତବ୍‌ଧ ନୟନ-ତୀରେ,
ଖୋଜିବାକୁ ଯାଇ ହଜି ମୁଁ ଯାଇଛି ତୋହରି ପଣତ ତଳେ ।।

ତୋତେ ମୁଁ ଖୋଜିଛି କାଲିଆନାବାଗେ, ଖୋଜିଛି ଚଟ୍ଟଗ୍ରାମେ
ଦାଣ୍ଡିର ପଥେ ଖୋଜିଅଛି ପୁଣି, ଖୋଜିଛି ନଗରେ ଗ୍ରାମେ ।
ପଞ୍ଜାବ ବୁକୁ ଲୋହିତ-କ୍ଷତରେ
ମରୁଡ଼ିପୀଡ଼ିତ କୃଷକ- କ୍ଷେତରେ
ଡହଳ ବିକଳ ଭୋକିଲା ପେଟରେ,
ଖୋଜିଛି ଡ଼ାହାଣେ-ବାମେ
କ୍ଷୁବ୍‌ଧ ହୃଦୟେ ଖୋଜିଅଛି ତୋତେ ରାତ୍ରିର ଶେଷଯାମେ ।।

ଶତ ଶତ ଶତ ଗଣ ଉତ୍‌ଥାନେ, ଶ୍ରମିକର ପଟୁଆରେ,
ଗରିବ ଚାଷୀର ଲଙ୍ଗଳ ମୁନେ, ସଂଗ୍ରାମୀ ହତଆରେ,
ଧର୍ଷିତା ନାରୀ ନୟନର ଲୁହେ
ବ୍ୟର୍ଥ ମଳିନ ଯୁବକର ମୁହେଁ
ମୃତ୍ୟୁ-ବଣିକ ରଣ ସମାରୋହେ,
ବିଦ୍ରୋହୀ ଚେତନାରେ
ଖୋଜିଛି ମୁଁ ତୋତେ ସଂଗ୍ରାମୀ ଶତ ମଣିଷର ପଟୁଆରେ ।।

ବହୁ ବିଭେଦର, ବହୁ ବିବିଧର ତୁ ମହାମିଳନ- ବିନ୍ଦୁ
ତୋହରି ଜଠରେ କଲ୍ଲୋଳ ତୋଳେ ଜୀବନର ମହାସିନ୍ଧୁ ।
ଏକରେ ଅନେକ, ଅନେକରେ ଏକ
ତୋର ଆମ୍ଭାର ଚିର-ସନ୍ତକ
ନୟନେ ତୋହର ତମସା-ଆଲୋକ
ଦୀପ୍ତ ଅରୁଣ-ଇନ୍ଦୁ,
ହେ ଭାରତ ମୋର ପ୍ରାଣର ଭାରତ,ତୁ ମହାମିଳନ-ବିନ୍ଦୁ ।।

ଖୋଜି ଖୋଜି ତୋତେ କ୍ଳାନ୍ତ ହେଲିଣି, ତଥାପି ଚାଲିଛି ଖୋଜି
ଯୁଗ ଯୁଗ ଧରି ଖୋଜିବାରେ ମୋର ଅନ୍ତ ନାହିଁ ଯେ ଆଜି ।
ବନ୍ଦୀ ହୋଇ ମୁଁ ତୋ ପଣତ ତଳେ
ଶିଶୁଟିଏ ଭଳି କାଳ କାଳ ଖେଳେ
ଖୋଜିବାକୁ ଯାଇ ହଜିଯାଏ ଧୀରେ
ପାରେନାହିଁ ତୋତେ ବୁଝି,
ଭାରତ ହେ ମାର ଜନନୀ ଭାରତ, ତଥାପି ଚାଲିଛି ଖୋଜି ।।



# କବିର ପ୍ରାର୍ଥନା

## ।। ଏକ ।।

ମୋତେ ଦିଅ ପଚିଶଟି
ଚିକ୍ ଚିକ୍ କ୍ଷିପ୍ରଗତି
ଶଙ୍ଖଶୁଭ୍ର ରୁପେଲି କପୋତ ;
ଶାନ୍ତି ଆଉ ପ୍ରଗତିର
ସାମ୍ୟ ଓ ମୈତ୍ରୀର ;
ମୁଁ ତାହାକୁ ଉଡ଼ାଇବି
ମୋ ଦେଶର ଅଗଣନ
ଜନଗଣ ମନର ଆକାଶେ ;
ଏଇ ମୋର ଉଦ୍‌ବେଳିତ
ହୃଦୟର ଅନ୍ତହୀନ
ଅଜସ୍ର ଉଚ୍ଛ୍ୱାସେ ।
ସେମାନଙ୍କ ପ୍ରସାରିତ
ପରିଚ୍ଛନ୍ନ ରଜତ ଡେଣାରେ
ଲେଖିଦେବି କେତେଗୋଟି
ସମୁଜ୍ଜ୍ୱଳ ବର୍ଣ୍ଣାଢ଼୍ୟ ଅକ୍ଷର-
"ଜନତାର ଜୟ ହେଉ
ବିପ୍ଳବର ଜୟ ହେଉ
ସ୍ୱାଧୀନତା ହେଉ ଦୀର୍ଘଜୀବୀ "
ହୃଦୟ-ଲୋହିତ-ପାତ୍ରୁ
ଦେବି ମୋର ବିନ୍ଦୁ ବିନ୍ଦୁ
ଶୋଣିତେ ସ୍ୱାକ୍ଷର ।।

## ।। ଦୁଇ ।।

ମୋତେ ଦିଅ ପଚିଶଟି
ଅମଳିନ ଢ଼ଳ ଢ଼ଳ
ସୂର୍ଯ୍ୟସ୍ନାତ ରକ୍ତର କମଳ :
ସ୍ନେହ ଓ ଶ୍ରଦ୍ଧାର ପୁଣି
ପ୍ରୀତି-ବନ୍ଧୁତାର ;

ଫୁଟାଇବି ମୋ ଦେଶର
ଅଗଣିତ କିଶୋର ଓ
ଲକ୍ଷ ଲକ୍ଷ ନିରିମାଖୀ ନିରୀହ ଶିଶୁର
ଛଳ ଛଳ ନୟନର
ଥର ଥର ନୀଳ ସରୋବରେ ;

ଏଇ ମୋର ହୃଦୟର
ଅକପଟ ପ୍ରୀତି ଆଉ
ସ୍ନେହ-ସୋହାଗରେ
ଭିଜାଇ ଭିଜାଇ ତାର
କମନୀୟ ପ୍ରତିଟି ପାଖୁଡ଼ା

ଆଗାମୀର ଚିତ୍ରପଟେ
ଆଙ୍କିଦେବି ନୂଆ ଏକ
ଶ୍ରେଣୀହୀନ ସମାଜର
ହିରଣ୍ମୟ ଛବି ;

ମୋ କଣ୍ଠ ଫଟାଇ ମୁହିଁ
କହିବିତ ବଜ୍ରସ୍ୱରେ
ଉଦାତ୍ତ ଭାଷାରେ-
"ସଂଗ୍ରାମର ଜୟ ହେଉ
ବିପ୍ଲବର ଜୟ ହେଉ
ସ୍ୱାଧୀନତା ହେଉ ଦୀର୍ଘଜୀବୀ ।।"

## ।। ତିନ ।।

ମୋତେ ଦିଅ ପଚିଶଟି
କୋଣାର୍କର ଖରଗତି
ଦିଗ୍‌ବିଜୟୀ ଦୁରନ୍ତ ତୁରଗ,
ଅଶୋକ ସ୍ତମ୍ଭର ମହା-
ଧର୍ମ୍ମଚକ୍ର ସାଥେ
ଦୁର୍ବାର ପ୍ରଗତି ରଥେ
ଯୋଚି ଦେଇ ମୁହିଁ
ଗଗନବିହାରୀ ସୂର୍ଯ୍ୟ- ସାରଥିର ପ୍ରାୟେ
ଛୁଟାଇବି ଉଲ୍‌କା ବେଗେ
ଏକ ଦିଗେ କୁମାରୀକା ଅନ୍ତରୀପ ଠାରୁ
ଅରଣ୍ୟ-ମେଖଳା ତୁଙ୍ଗ ହିମାଳୟ ଯାଏଁ ।

ଅନ୍ୟଦିଗେ ପୂତନୀରା
ଜାହ୍ନବୀର ସମତଳ
ଶ୍ୟାମ-ଶଯ୍ୟାଠାରୁ
ଥର୍‌ର ମରୁଭୂମି
ବିନ୍ଧ୍ୟର ପର୍ବତମାଳା
ଅତିକ୍ରମି ଅଶ୍ୱ ମୋର
ଛୁଇଁଯିବ ବୀଚିମାଳା ବିକ୍ଷୋଭିତ ଆରବ ସାଗର ;

ତା’ ଦୃପ୍ତ ଟାପୁର ଶବ୍ଦେ
ଥର ଥର କମ୍ପମାନ ଯବନିକା ପରି
ଥରି ଥରି ଯିବ ଝରି
ଶତ ଶତ ଶତାବ୍ଦୀର
ସ୍ତୂପୀକୃତ ତମସାର
ସୁଦୀର୍ଘ ପ୍ରାଚୀର ।

ପ୍ରଗତିର ହ୍ରେଷାରବେ
ଦୋହଲିବ ଜନତାର
ସ୍ତୂପୀକୃତ ଜଡ଼ତାର
ଅଭ୍ରଭେଦୀ ଅଚଳାୟତନ ;
ଶୋଷକର କରତଳୁ
ଶୋଷଣର ଦୃଢ଼ରଜ୍ଜୁ ହୋଇବ ଶିଥିଳ ;
ପଲ୍ଲବିତ ହେବ ଶତ
ମରୁଦଗ୍ଧ ଚେତନାର
ସୁରଭିତ ପାରିଜାତ ବନ ॥

॥ ଚାରି ॥

ଦିଅ ମୋତେ ପଚିଶଟି
ସତେଜ ଓ ଶ୍ୟାମକାନ୍ତ
ପ୍ରାଣସ୍ଫୁର୍ତ୍ତ ଜୀବନର ଚାରା ,
ଅନନ୍ତ ଆଶା ଓ ଦୃଢ଼
ବିଶ୍ୱାସରେ ଭରା ।
ମୁଁ ତାହାକୁ ରୋପିଦେବି
ମୋ ଦେଶର ଶ୍ରମଜୀବୀ-
କୃଷକ ଓ ଶ୍ରମିକର
ବେଦନାର୍ତ୍ତ ହୃଦୟର
ଖର ରୁକ୍ଷ ଅହଲ୍ୟା-ମାଟିରେ ,
ରୋପିଦେବି ନୀଡ଼ହରା-
ଜନନୀର କାତରାଶ୍ରୁ-
ସଞ୍ଚିତ ନୟନେ ପୁଣି
ଆଶାହତ ତରୁଣର
କରୁଣ କାତର ସ୍ୱର
ଧ୍ୱନିତ ଅନ୍ତରେ ।

ରୋପିଦେଇ ସେ ଜୀବନ-ଚାରା,
ଭରିବାକୁ ଓଠେ ତାର
ହରିତ୍ ହସର ଢେଉ
ମୁଁ ପୁଣି ଆଣିବି ଡାକି
ଅସୀମ ଆକାଶ କୋଳୁଁ
ଆଷାଢ଼ର ପ୍ରଥମ ଅସରା ।।

**।। ପାଞ୍ଚ ।।**

ମୋତେ ଦିଅ ପଚିଶଟି
ଅପରୂପା ରୂପବତୀ
କାଶ୍ମିରୀ ସୁନ୍ଦରୀ ପରି
ହସକୁରୀ ସ୍ୱପ୍ନର ଗୋଲାପ ;
ମୁଁ ତାହାକୁ ଛଳ ଛଳ
ଯୌବନର କଳକଳ
ମଧୁମତୀ ନଦୀରେ ଭସାଇ
ମରମର ମମତା ଓ
ହୃଦୟର ପ୍ରୀତିରେ ରସାଇ
ଫୁଟାଇବି ମୋ ଦେଶର
ହତଶିରୀ-ହିନିମାନୀ
ଭଗିନୀ ଓ ପ୍ରଣୟିନୀ-
ନୁଖୁରା ବିବର୍ଣ୍ଣ ଭୀରୁ ମାନସ ଚିକୁରେ ;
ଥରି ଥରି ନାଚିବ ସେ
ସ୍ୱପ୍ନର ଗୋଲାପ ମମ
ହାସ୍ୟମୟୀ-ଲାସ୍ୟମୟୀ
ଲୀଳାୟିତା ନଟୀ ସମ ;
ସୁରଭିତ ମଳୟର
ସୁଲଳିତ ବଳୟର
ବିଚିତ୍ର ହିଲ୍ଲୋଳେ ।।

**॥ ଛଅ ॥**

ଅବଶେଷେ ମାତ୍ର ମୋର
ଏତିକି ପ୍ରାର୍ଥନା,
ଦିଅ ମୋତେ ପଚିଶଟି
ବସନ୍ତର ଅସରନ୍ତି
ଉଚ୍ଛଳ ତାରୁଣ୍ୟ,
ମୁଁ ତାହାକୁ ଶୋକହୀନ
ଅଶୋକ ଓ ପଲାଶର
ବର୍ଣ୍ଣମୟ ରଙ୍ଗରେ ଭିଜାଇ,
ଶିମୁଳୀର ଟହ ଟହ
ରକ୍ତରେ ରଞ୍ଜାଇ
ଶ୍ଲଥଚର୍ମା, ଜରାଜୀର୍ଣ୍ଣା ,
ପକ୍ୱକେଶା ଜନନୀକୁ ମୋର
ଦେବି ଅର୍ଘ୍ୟ, ଦେବି ଉପହାର ;
ଶତାବ୍ଦୀର ମହାନିଦ୍ରା ଭାଙ୍ଗି
ଅନନ୍ତ ଯୌବନ ନେଇ
ସିଏ ଯେବେ ଉଠିବତ ଜାଗି ;
ଶିହରି ଉଠିବ ଏହି
ଆକୁମାରୀ ହିମାଚଳ
ବିନ୍ଧ୍ୟାଦ୍ରି ଶିଖର ।

ଗୋଟିଏ ଶରୀରେ ଧରି
କୋଟି କୋଟି ହତଭାଗ୍ୟ
ମଣିଷର ପ୍ରାଣ,
ଗୋଟିଏ ବୁକୁରେ ଭରି
ଅଗଣିତ ବାସ୍ତୁହରା
ନିରନ୍ନର ମର୍ମ୍ମଥରା
ଆକୁଳ କ୍ରନ୍ଦନ ,

ମୁଁ ତାହାର ଅଲିଅଳ ଶିଶୁଟିଏ ପରି
ଦିଗନ୍ତ ପ୍ରସାରୀ ତାର
ସବୁଜ ଶାଢ଼ୀର ନୀଳ
ଝଲ୍ ମଲ୍ ପଣତ ଓଟାରି
ଭୁଲିଯାଇ ସବୁ ଦୁଃଖ
ସବୁ ଶୋକ
ବିଭେଦ ଓ ଗ୍ଲାନି
କାରାର ଶୃଙ୍ଖଳ ଅବା
ଶାସନର ବନ୍ଧନ ନ ମାନି
ହସି ହସି ଲୋଟିଯିବି
ପ୍ରାଣର ଆକୁଳେ ;
ଭୂବନ-ବନ୍ଦିତା ମାଆ
ତରଙ୍ଗିତ ବୀଚିମାଳା
ବିଧଉତ ଚରଣର ତଳେ ।।



# ହେ ଉତ୍କଳ ! ଜନନୀ ଉତ୍କଳ !!

॥ ଏକ ॥

ହେ ଉତ୍କଳ ! ଜନନୀ ଉତ୍କଳ !!
ନିରୀହ ନୟନୁ ତୋର
ନିରବଧି ଏତେ ଅଶ୍ରୁଜଳ
ଶ୍ରାବଣର ଧାରା ଭଳି
କାହିଁକି ବା ଝରି ଝରି
ମହାନଦୀ ଜଳସ୍ରୋତେ
ମିଶେ ବଙ୍ଗ ସାଗର ସଂଗମେ ?
କାହିଁକି ବା କୁଢ଼ କୁଢ଼
ଅପ୍ରମିତ ଦୁଃଖ ତୋର
ସ୍ତୂପୀକୃତ ପାହାଡ଼ର ଭଳି
ଗିରୀନ୍ଦ୍ର ମହେନ୍ଦ୍ର ଆଉ
ମେଘାସନ ଶିର ଛୁଁଇ ଛୁଁଇ
ଏ ଧୂସର ଧରଣୀରୁ
ଅନ୍ତହୀନ ଆକାଶକୁ ଚୁମେ ??

ତୋ ବୁକୁର ଯେତେ ଯେତେ
ଅସରନ୍ତି ବ୍ୟଥା ଆଉ
ତୋ ପ୍ରାଣର ଯେତେ ଯେତେ
ନିରୁକ୍ତ ବେଦନା,

ତୋ ନିରୀହ ଅଭିମାନୀ
ହୃଦୟର ପୁଣି
ଅସହଣି ଯେତେକ ଯନ୍ତ୍ରଣା,
ରକ୍ତର ପତାକା ହୋଇ
ଫରଫର କାହିଁକି ବା ଉଡ଼େ
ନୀଳାଚଳେ ନୀଳଶୈଳ ଚୂଡ଼େ ?

କାହିଁକି ବା ତୋ ତନୁର
ଅବସନ୍ନ କ୍ଳିନ୍ନ ପାଣ୍ଡୁରତା
ବିସ୍ତୀର୍ଣ୍ଣ-ଦିଗନ୍ତ ଛୁଆଁ
ବିଲମ୍ବିତ ବାଲୁକା-ବେଳାର
ଧୂସର ଅଞ୍ଚଳ ହୋଇ
ସାମୁଦ୍ରିକ ପବନରେ ଥରେ ??

॥ ଦୁଇ ॥

ଜାଣେ ମୁଁ ଗୋ ଜାଣେ,
କାହାର କୁଟିଳ ମାୟା
ପ୍ରସାରି ତା' କାୟା
ଘୋଟିଛି ତୋ ବିଷଣ୍ଣ ବଦନେ ।
ସ୍ମିତର ଅରୁଣ କାନ୍ତି
ରାହୁଗ୍ରାସେ କରିଅଛି କ୍ରୂର,
ନିରିମାଖୀ ଆଖିରୁ ତୋ
ପୋଛିଅଛି ଆଶାର କଜ୍ଜ୍ୱଳ ;
ସିନ୍ଦୂର ବିନ୍ଦୁକୁ ପୁଣି
ସୀମନ୍ତରୁ ଦେଇଛି ଲିଭାଇ
ଉଜ୍ଜ୍ୱଳ ଲଲାଟପଟେ
ବୈଧବ୍ୟର କଳାମେଘ ଛାଇ

ବିଷାଦର ସର୍ବନାଶ।
ଯବନିକା ଆଣିଅଛି ଟାଣି
କିଏ ସେହି 'କାଳନେମି'
ଜନନୀ ଗୋ ପାରିଛି ମୁଁ ଜାଣି !

ଫିରିଙ୍ଗି ଶାସନ ଠାରୁ
ଆଜିର ଏ ଜହ୍ଲାଦ-ଚକ୍ରର
ଅବିରତ ବେତ୍ରାଘାତେ
ଜର୍ଜରିତ, ଛିନ୍ନ ଭିନ୍ନ
ଜରାଜୀର୍ଣ୍ଣ ତୋ ଶୀର୍ଣ୍ଣ ଶରୀର ।

ମୌନମୁଖେ ଫୁଟେନାହିଁ ଭାଷା,
ଶୋଷଣର ଚକ୍ର-ବ୍ୟୂହେ
ରତ୍ନଗର୍ଭା ଜନନୀ ତୁ
ନଗ୍ନବେଶା - ଧର୍ଷିତା - ଲୁଣ୍ଠିତା
ଦୁଃଶାସନ ଅତ୍ୟାଚାରେ
ପାଞ୍ଚାଳୀ ତୁ ଆଜି ମୁକ୍ତକେଶା ।

ହୀନବୀର୍ଯ୍ୟ ତୋ ସନ୍ତାନ-ଦଳ ;
ଜଘନ୍ୟ ସ୍ୱାର୍ଥରେ ମାତି
ପାରନ୍ତିନି ପୋଛି
ତୋ କରୁଣ ନେତ୍ରପ୍ରାନ୍ତୁ
ଖର-ତପ୍ତ-ନୀଳ ଅଶ୍ରୁଜଳ ।

ବଳୀଆର ଭୁଜ ଆଜି ତୋର
ଶ୍ଲଥାନିତ ପ୍ରତ୍ୟୟର ବିଜନ କାନ୍ତାରେ
ଶବ ସମ ନିର୍ଜୀବ-ନିଥର ।

ସ୍ୱପ୍ନର ଶିମୁଳୀ ଯେତେ ନବ ବସନ୍ତର
ବ୍ୟର୍ଥତା-କରକା ଘାତେ
ପାଷାଣୀ ଅହଲ୍ୟା ସମ
ପାଲଟିଛି ପ୍ରାଣହୀନ ମଳିନ ପ୍ରସ୍ତର ।।

## ।। ଚାରି ।।

କେତେଦିନ, ଆଉ କେତେଦିନ
ତାମସ-ତପସ୍ୟା ତୋର ଚାଲିଥିବ
ଜନନୀ ଗୋ ମୋର !
ଅଭିଶପ୍ତ ଜୀବନରୁ
ହେବନିକି ଶାପର ମୋଚନ ?

କେତେଦିନ , ଆଉ କେତେଦିନ ?
ମହାଭାରତୀୟତାର କୁରୁସଭାତଳେ
ପାଶବିକ ଉଲ୍ଲାସରେ ହସି ଅଟ୍ଟହାସ୍ୟ
ଭିଡୁଥିବେ ତୋ ଉତ୍ତରୀ
ମଦମତ୍ତ ଶତ ଦୁଃଶାସନ ??

କହ ମା' ଗୋ ଆଉ କେତେକାଳ,
ଅବାରିତ ଅତ୍ୟାଚାରେ
ପଲ୍ଲୀକୋଳେ,ନଗରେ, ବନ୍ଦରେ
ଶୋଷଣର ବେତ୍ରାଘାତେ
ସଢୁଥିବ - ଗଢୁଥିବେ
ତୋ ପ୍ରାଣର ତୋ ପ୍ରିୟ ଦୁଲାଳ ??

॥ ପାଞ୍ଚ ॥

ଜନନୀ ଗୋ ଆଉ ନୁହେଁ ନୁହେଁ;
ତାମସ-ତପସ୍ୟା ତୋର
ସରିବନି ସରିବନି କେବେ
ନିରିମାଖି ନୟନର ଲୁହେ ।
ଅଶ୍ରୁସିକ୍ତ ଆକୁତିରେ
ମିଳିବନି ଆତ୍ମ-ଅଧିକାର ;
ମୁଁ ତେଣୁ ଉଠିଛି ଜାଗି
ହେ ଉତ୍କଳ ! ଜନନୀ ଉତ୍କଳ !
ବିଦ୍ରୋହର ଧ୍ୱଜା ତୋଳି
କରିବାକୁ ତୋ ବେଣୀ-ସଂହାର ।
କପଟପଶାର ଖେଳେ
ବାଜିରଖି ତୋ ଆତ୍ମ-ସମ୍ମାନ,
ଏତେ ଦିନ, ଆଜି ଏତେ ଦିନ
ଜନନୀ ଗୋ ଯେତେଯେତେ
ସ୍ୱାର୍ଥମଗ୍ନ କାପୁରୁଷ
ଭୀରୁ ଲଜ୍ଜାହୀନ
ବାହୁସ୍ଫୋଟେ ମାରୁଥିଲେ ତାଳି ;
ଇତିହାସ ଅନ୍ଧକାରେ
ସେମାନଙ୍କୁ ନିର୍ବିଚାରେ
ପଦପ୍ରାନ୍ତେ ଦଳି,
ଶତାବ୍ଦୀର ଶ୍ୱେତପତ୍ରେ
ଢ଼ାଳିଦେଇ ଶୋଣିତର ମସି
ହାତେ ଧରି ରଣଦୃପ୍ତ
ଲେଖନୀର ଦିଗ୍‌ବିଜୟୀ ଅସି ,
ଆସିଛି ମୁଁ ଦେବାପାଇଁ
ତୋତେ ତୋର ନ୍ୟାଯ୍ୟ ଅଧିକାର
ହେ ଉତ୍କଳ ! ଜନନୀ ଉତ୍କଳ !!

## ॥ ଛଅ ॥

ଚିଲିକାର ଛଳଛଳ
ନୀଳଜଳ ଉଜ୍ଜ୍ୱଳ ମୁକୁରେ
ଦେଖିବାକୁ ଚାହେଁ ମୁହିଁ
ଶାନ୍ତ ସୌମ୍ୟ ଅନୁପମ ମୁଖଶ୍ରୀ ତୋହର;
ମହୋଦଧି ଉତ୍ତାଳ ତରଙ୍ଗେ
ବାନ୍ଧିବାକୁ ଚାହେଁ ତୋର
ଅବିନ୍ୟସ୍ତ ଆଲୁଳିତ ବିମୁକ୍ତ ଚିକୁର
ଲାବଣ୍ୟର ଲଳିତ ବିଭଙ୍ଗେ ।

ମେଘାସନ ମନ୍ଦ୍ରିତ ଶିଖରେ
ଦେଖିବାକୁ ଚାହେଁ ତୋର
ଉନ୍ନତ ଲଲାଟପଟ
ସିନ୍ଦୂରିତ ସୂର୍ଯ୍ୟର ସ୍ୱାକ୍ଷରେ ।

କଟୀତଟେ ଶସ୍ୟ-ସ୍ନିଗ୍ଧ
ଶ୍ୟାମଳ ମେଖଳା
ଅଙ୍ଗେ ଅଙ୍ଗେ ତରଙ୍ଗିତ
ତଟିନୀର ମୃଦୁ ଲାସ୍ୟଲୀଳା
ଦେଖିବାକୁ ଚାହେଁ ମୁହିଁ
ଆକାଶର ପକ୍ଷୀ ହୋଇ
ଫୁଲ ହୋଇ ରସମୟୀ-
ତୋ ମାଟିର ଘାସେ
ସ୍ୱପ୍ନର ସୁରଭି ହୋଇ
ତୋହରି ନିଃଶ୍ୱାସେ ;
ଯୁଗଯୁଗ, ଜନ୍ମ ଜନ୍ମାନ୍ତର
ହେ ଉତ୍କଳ ! ଜନନୀ ଉତ୍କଳ !!



# ଏହି ଭାରତରେ...

॥ ଏକ ॥

ଗଣତନ୍ତ୍ରର ଗଣିକାଳୟରେ
          ଇଏ କେଉଁ ଖେଳ, ଇଏ କି ରୀତି ?
କ୍ଷମତା-ଲୋଭରେ, ଅର୍ଥ-ଲୋଭରେ
          ନିଲାମ ଚାଲିଛି ବିବେକ, ନୀତି
          କୁଳଟା ବୋଲାଏ ସାଧ୍ୱୀ-ସତୀ
ନ ଦେଖିଲା ଲୋକ ମେଲାଇ ଆଖି
          ଦେଖରେ, ଦେଖରେ, ଦେଖ ଏ ଲୀଳା
ଗଣନ୍ତ୍ରର ଗଣିକାଳୟରେ
          ଲାଗିଛି ତାମସା, ଲାଗିଛି ପାଲା ॥

॥ ଦୁଇ ॥

ଏ ଦଳୁ ସେ ଦଳ, ଅଦଳ ବଦଳ
          ଚାଲିଛି ମାଦଳ ପରାଏ ଗଡ଼ି
ତ୍ରିଗୁଣ ରଜ୍ଜୁ କରେ ଧରି ଆଜି
          ନଚାଉଛି ମୃଗୀ କେ ନରହରି ?
ମୁଲ୍‌କଟା ସାରା ପଡ଼ିଛି ହୁରି
ଅନ୍ଧ ଜନତା ନୟନ ଫେଡ଼ି
          ଦେଖ ଏ ଦେଶର ଭାଗ୍ୟାକାଶେ
ଘୋଟି ଘୋଟି ଆସେ ଘନ ଅନ୍ଧାର
          ଅଶୁଭ ପେଚକ ଅଟ୍ଟହାସେ ॥

## ।। ତିନ ।।

ନିର୍ବିକାରରେ, ନିର୍ବିଚାରରେ
ଆପଣା ବୁଦ୍ଧି-ବିବେକ ଚୂରି
ସନ୍ନିଧାନର ଗଳାରେ ଚଳାଏ
ଗୁପ୍ତ ଘାତକ ଶାଣିତ ଛୁରି ;
ଧର୍ମକୁ ଆଖିମିଟିକା ମାରି
ପୌରୁଷହୀନ ରାଜାର ଦଲାଲ
ଭ୍ରଷ୍ଟ-ଚେତନ ଦୁଃଶାସନ,
ମହାଭାରତର କୁରୁସଭା ତଳେ
କୃଷ୍ଣାରେ କରେ ବସ୍ତ୍ରହୀନ ।।

## ।। ଚାରି ।।

ଆମେ ଯେତେ ସବୁ ସ୍ୱାର୍ଥ ବେପାରୀ
ଦେଖୁଛୁ ଏ ଲୀଳା, ଦେଖୁଛୁ ବସି,
ଆମରି ଆଗରେ ଆମ ସ୍ୱାଧୀନତା
ଝୁଲୁଛି ଗଳାରେ ଲଗାଇ ଫାଶି,
ମତ୍ତ ଶାସକ ଉଠୁଚି ହସି,
ଚହଲି ଯାଉନି ବିବେକ ଆମର
ଦୋହଲି ଯାଉନି ଆମରି ବୁକୁ
ଆମ ଅଧିକାର ଲୁଣ୍ଠିତ ହୁଏ
ତଥାପି ବାକ୍ୟ ନ ଫିଟେ ମୁଖୁ ।।

## ।। ପାଞ୍ଚ ।।

ବନ୍ଧା ପଡ଼ିଛି ଦେଶଟା ଆମର
ବିଦେଶୀ ପୁଞ୍ଜି-ମାଲିକ ପାଶେ,
ଜାହାଜ ବୋଝେଇ ସଂସ୍କୃତି ଯେତେ
'ୟାଂକି' ମୁଲକୁ ଭାରତେ ଆସେ ;
ନବ ସଭ୍ୟତା ନବୀନ ବେଶେ

ଆଖିରେ ଆମର ଲଗାଇ ଦେଇଚି
 ମାୟା-ଅଞ୍ଜନ, ଭେଲିକି ନୂଆ,
ଆମେତ ଘୂରୁଚୁ ଆମ ଚାରିପଟେ
 ଘୂରି ଘୂରି ଖାଲି ବୁଲୁଛୁ ଭୁଆଁ ।।

।। ଛଅ ।।

ପଲକେ ପଲକେ ଯାଉଛି ବଦଳି
 ଯେତେକ ପୁରୁଣା ମୂଲ୍ୟବୋଧ
ନୂଆ ବୋଲି ଯାହା କରୁଛୁଁ ଗ୍ରହଣ
 ଅଗ୍ରଗତିକୁ କରୁଛି ରୋଧ,
 ବସିବସି ଆମେ ମୃତ୍ୟୁ-ବେଦ
ପଢୁଅଛୁ ସିନା କଣ୍ଠ ଫଟାଇ
 ବଜାଇ ପାରୁନୁ ଜୀବନ-ବୀଣା,
ସୃଷ୍ଟିର ପଥ ଛାଡ଼ିଦେଇ ଆମେ
 ଧ୍ୱଂସର ପଥେ ହେଉଛୁ ବଣା ।।

।। ସାତ ।।

ଅର୍ଥର ହୀନ ସ୍ୱାର୍ଥ-ବେଦୀରେ
 ଏ ସାରା ଦେଶଟା ପଡୁଛି ବଳି,
ବିଦ୍ୟା-ବିବେକ ଭଜିଛି ବିଲୟ
 ବାହୁବଳେ ଆଜି ସଭିଏ ବଳୀ ;
 ଲକ୍ଷ ଜୀବନ ଅକାଳେ ଦଳି
ମଣିଷ-ଶିକାରୀ, ରକ୍ତ-ବେପାରୀ
 ଯେତେ କାପୁରୁଷ ମୂର୍ଖ-ମୂଢ଼,
ମହା ବଳୀଆର ବୋଲାଏ ନିଜକୁ
 ଝରିଯାଏ ଆମ ସ୍ୱପ୍ନ-କଢ଼ ।।

## ।। ଆଠ ।।

କି ଲୀଳା ଲାଗିଛି ମହାଭାରତର
ଗଣତନ୍ତ୍ରର ଗଣିକାଳୟେ ?
ଏକି ରାଜନୀତି - ଅଶ୍ୱବେପାର
ନିଃସ୍ୱ ଜନତା ନୟନ -ଲୁହେ !
ଦେଖି ଏ ତାମସା ମର୍ମ ଦହେ ;
ତଥାପି ଆମର ଚକ୍ଷୁ ଫିଟେନା
ଆମେ କି ଅନ୍ଧ ଆମେ କି ମୂକ ?
ସବୁ ଜାଣିଶୁଣି ତଥାପି ଅଜଣା
ଆମେ ସବୁ ଧଳା ଧର୍ମବକ ।।

## ।। ନଅ ।।

ଏଇ ଭାରତରୁ ଆଉ କେତେ ଦିନେ
ଏ ମହାନାଟକ ହୋଇବ ଶେଷ ?
ସୁପ୍ତ ରଜନୀ କୋଳରୁ ଜାଗିବ
ଦୀପ୍ତ - ଚେତନ ଏ ମହାଦେଶ ?
ରଂଜିତ ହେବ ପୂର୍ବାକାଶ ?
ଜନଚେତନାର ଢେଉରେ ଢେଉରେ
ଅପସରି ଯିବ ଅନ୍ଧରାତି,
ଗଣତନ୍ତ୍ରର ଗଣିକାଳୟରୁ
ଜାଗିବେ ନୂତନ ସାଧ୍ୱୀ - ସତୀ ??



# ସ୍ୱପ୍ନର ତୁମ ଜଉଗଡ଼ ଯିବ ଜଳି

॥ ଏକ ॥

ଭୋକିଲା ପେଟରେ ବହ୍ନି ଜଳାଇ ଆଜି
ଖେଳୁଛ ତୁମେ ଯେ 'ଅଗ୍ନି 'ଆତସବାଜି ,
ଗର୍ବେ ତୋଳୁଛ ଉର୍ଦ୍ଧ୍ୱେ ନିଜର ମଥା
ଲଜ୍ଜା, ଲଜ୍ଜା, ନିହାତି ଲଜ୍ଜା କଥା ॥

॥ ଦୁଇ ॥

ଶ୍ରାଦ୍ଧ କରୁଛ ବିପୁଳ ଅର୍ଥ ଯେତେ
ଲକ୍ଷ ବେକାର ଘୂରୁଅଛି ଫୁଟ୍‌ପାଥେ ,
କାହାକୁ ଆପଣା ଶକ୍ତି ଦେଖାଅ କୁହ
ପୋଛିକି ପାରିଛ କ୍ଷୁଧିତ ତପ୍ତଲୁହ ??

॥ ତିନ ॥

ଦେଶ କି ତୁମରି, ରାଷ୍ଟ୍ର ତୁମରି ଖାଲି
କଙ୍କାଳ-ହାଡ଼େ ଖେଳୁଥିବ ପଶାପାଳି !
କେତେଦିନ ଆଉ କେତେକାଳ କୁହ ତୁମେ ?
ଉଦ୍ଧତ ତୁମ ସ୍ପର୍ଦ୍ଧା ଆକାଶ ଚୁମେ ॥

**॥ ଚାରି ॥**

ରକ୍ଷାକବଚ 'ଅଗ୍ନି' ରେ ନାହିଁ ଜାଣ
ଲକ୍ଷ ହୃଦୟେ ରହିଚି 'ଅଗ୍ନିବାଣ'
ସେ ମହାବାଣରେ ଶତ୍ରୁ-ଶିବିର ଟଳେ
ଦେଶପ୍ରେମର ଅଳିଭା-ବହ୍ନି ଜଳେ ॥

**॥ ପାଞ୍ଚ ॥**

ମଣିଷକୁ ତୁମେ ମଣିଷର ଅଧିକାର
ଦେଇ ତ ପାରିନ, ପୋଛିନ ଅଶ୍ରୁଧାର ;
ଦେଶ ବୋଲି କିଏ ଗର୍ବ କରିବ କିଆଁ ?
ଦେଶର ସ୍ୱାର୍ଥେ ତୋଳିବ ବଜ୍ରବାହା ??

**॥ ଛଅ ॥**

ଯାହାକୁ କହୁଛ ଗଣର ଶାସନ ଆଜି
ସେ ସିନା ତୁମର କ୍ଷମତାର ଭୋଜବାଜି ;
ନିରାପଦ ତୁମ ରଖିବାକୁ ରାଜଦଣ୍ଡ
ରାଷ୍ଟ୍ର ନାମରେ ଭିଆଉଛ ଯେତେ କାଣ୍ଡ ॥

**॥ ସାତ ॥**

'ଶାନ୍ତି' - 'ଶାନ୍ତି' ମନ୍ତ୍ର ଜପୁଛି ନିତି
ଦେଶେ ଦେଶେ ଗାଅ ଗାନ୍ଧିଜୀ ଜୟଗୀତି ;
କରୁଅଛ ଏଣେ ରଣ-ବନ୍ଦନା ଗାନ
ସନ୍ଧାନ କରି 'ଅଗ୍ନି'ର ଖରବାଣ ॥

**॥ ଆଠ ॥**

ଇଏ କି ଶାସନ, ଇଏ କେଉଁ ନୀତି କୁହ ?
ସଂତ୍ରାସବାଦୀ ରଚୁଛି ମରଣ ବ୍ୟୂହ ;
ଅପରାଧୀ ରାହୁ - ବାହୁତଳେ ତୁମେ ଲୁଚି
ମଣିଷକୁ ମଣ ରାସ୍ତାର ପୋକ-ମାଛି ॥

**।। ନଅ ।।**

ବିଦେଶୀ ଫାଶରେ ବନ୍ଧା ସାରାଟା ଦେଶ
ଘାରୁଛି କ୍ରମଶଃ ବିଦେଶୀ ପୁଞ୍ଜି ବିଷ ;
ପଣ୍ୟର ଦର ଶୂନ୍ୟ ଆକାଶ ଛୁଏଁ
ଅମଲାତନ୍ତ୍ର ବାହୁମେଲେ ନିର୍ଭୟେ ।।

**।। ଦଶ ।।**

ଏତେବେଳେ ଯେତେ ଚାଟୁକାର ଭାଟଦଳ
କମ୍ପିତ କରି ଧରଣୀ, ଆକାଶ ତଳ,
ନିର୍ବିଚାରରେ ସତ୍ୟର ଗଳା ଚିପି
ଖୋଲିଲେଣି ମହା ମିଥ୍ୟାର ସୁରା- ଠିପି ।।

**।। ଏଗାର ।।**

ତଥାପି ତ ତୁମେ ଗର୍ବେ ତୋଳୁଛ ମଥା
ଲଜ୍ଜା-ଲଜ୍ଜା ନିହାତି ଲଜ୍ଜା କଥା ;
ଅୟୁତ ଜଠରେ ଅଗ୍ନି ଉଠୁଚି ଝଳି
ସ୍ୱପ୍ନର ତୁମ ଜଉଗଡ ଯିବ ଜଳି ।।



# ହେ ମହାମହିମ ଜାଣିରଖ !

ସମାଜର ଯେବେ ଭିତ୍ତି ଦୋହଲେ
ପକାଉଛ କା'ର ମୂଳଦୁଆ ?
ମଣିଷର ଯେବେ ଚିତ୍ତ ଚହଲେ
କେଉଁ ବାର୍ତ୍ତା ବା ଦିଅ ନୂଆ ??

ଭିତ୍ତି ଫଳକ ଥାପୁଅଛ ଯେତେ
ଉତ୍ସବେ ମାତି ନିତି ନିତି,
ଭାଙ୍ଗୁଚ ସେତେ ଦେହର ଦେଉଳ
କ୍ଷୁଧାର ହାତୁଡି ପିଟିପିଟି ।

ଯୋଜନାର ଯେତେ ଯୋଜନ ଯୋଜନ
ରାସ୍ତା ଯାଉଛ ମେଲି ମେଲି,
ସ୍ୱାର୍ଥର ସେତେ ଶକ୍ତ-ରୋଲର
ତହିଁପରେ ଯାଏ ଗଡ଼ି ଗଡ଼ି ।

ଫାଇଲ ଉପରେ ମାଇଲ ମାଇଲ
ଛୁଟାଉଛ କାର୍ 'ପ୍ରଗତି'ର
ଫୁଟ୍‌ପାଥେ ଗଡ଼େ ଲକ୍ଷ ବେକାର୍ ,
ବୋଲାଉଛ ଗତି ଅଗତିର ??

ନିର୍ମଳ ଭାବ-ମୂର୍ତ୍ତିକୁ ଯେତେ
ଦେଖାଅ ଶାସନ-ଦରପଣେ,
ଲେପୁଥାଅ ସେତେ କଳଙ୍କ - କାଳି
ଆପଣା ସ୍ୱାର୍ଥ-ବିନୋଦନେ ।

ଆସନ-କଳିକୁ ବିଦ୍ରୂପ କରି
ଭାଷଣର ସୁଧା ଯେତେ ଢାଳ,
ଭାଟଦଳ ଗୁଣ-କୀର୍ତ୍ତନ କରେ
ହାତେ ଧରି ଖୋଳ-କରତାଳ ।

ନିତି ନିତି ଦେଇ ନୀତିର ଭାଷଣ
ଯେତେ ଦୁର୍ନୀତି-ମହୀରୁହ
ରୋପିଦିଅ ତୁମ ଶକ୍ତ ହାତରେ
ଥରଇ ସମାଜ ଅହରହ ।

ଅତୀତକୁ ତୁମେ ଆଖିଠାର ମାରି
ଇତିହାସେ କର ପରିହାସ
'ମହାମାନବ'ର 'ପଦଯାତ୍ରା' ତ
ତୁମ ସ୍ୱାର୍ଥର କ୍ରୀତଦାସ ।

ବିଭେଦର ବୀଜ ବୁଣିବାଣି ଦେଇ
ଫୁଟାଉଛ ଯେତେ ଗୋଳାଗୁଳି,
ଲୁହ ଓ ଲହୁରେ ତିନ୍ତିଲେ ଦେଶ
ଆପେଆପେ ହୁଅ କୋଳାକୋଳି ।

କ୍ଷମତା-ଗଣ୍ଡି ଫିଟିଯିବ ବୋଲି
କୁଞ୍ଚକାନୀକୁ ଟେକି ଧର
ଦମ୍ଭରେ ଯେତେ ଚାଲିଲେ ତଥାପି
ପାଦ ତଳ ମାଟି ଥରହର ।

ତମେ କି ଜାଣିନ, ତମେ କି ଶୁଣିନ
ମହାସମୟର ରଥଚକ,
ସବୁ ଗର୍ବକୁ ଚୂର୍‌ମାର୍ କରି
ଗଡ଼ି ଚାଲିଯିବ ଆଚାନକ ।

ଜନଚେତନାର ବାସୁକୀ ଯେ ଦିନ
ତୋଳିବ ଶକ୍ତ ତା'ର ଫଣା,
ହେ ମହାମହିମ ସମ୍ରାଟ ତୁମ
ବୁଦ୍ଧି ହୋଇବ ବାଟବଣା ।

ମହାଜନତାର ରଣ ହୁଂକାରେ
ଟଳିବ ସିଂହାସନ ତୁମ,
ସବୁ ଦମ୍ଭର ହେବ ଅବସାନ
ଥରିବ ଧରଣୀ, ମହାବ୍ୟୋମ ।

ହେବ ନୂତନର ଅଭିଷେକ ପୁଣି
ଦୀନ-ଦଳିତର ଅଭିଷେକ,
ହେ ମହାମହିମ ସମ୍ରାଟ ତୁମେ
ଜାଣି ରଖ ଆଜି ଜାଣି ରଖ ।



# ଆଉ କେତେ କାଳ ?

ଦେଶଟାକୁ କଲ ବିରାଟ କୋକେଇ
ଦେଶବାସୀ ହେଲେ ଜୀଅନ୍ତା ମଡା
ହରିବୋଲ ଦେଇ ଯେତେ ମାଲଭାଇ
ଏଥର କୋକେଇ ଉଠାଅ ଭଲା ।

ବୋହିନେଇ ମଡ଼ା ମଶାଣିର ଦିଗେ
ଗଙ୍ଗାରେ ବୁଡ଼ ପକାଅ ଯାଇ
ଦିଲ୍ଲୀର ଗାଦି ଡାକୁଛି ତୁହାଇ
ଆଉ କେତେକାଳ ରହିବ ଚାହିଁ ?

ମଣିଷ ମନର ଅନ୍ଧ ପେଡ଼ିରେ
ଶୋଇଥିଲା ଯେଉଁ କୃଷ୍ଣ-ନାଗ
ପେଡ଼ି ଖୋଲିଦେଲ, ଦେଖ ସେ କେମିତି
ଫଣା ଟେକି ଆଜି ଦେଖାଏ ବାଗ ।

ଚତୁରେ ଚଳାଇ ଧର୍ମର ଦାବା
ରାଜନୀତି ପଶା ଖେଳୁଛ ବସି
ତୁମେକି ଦେଖୁନ ତୁମରି ସ୍ୱାର୍ଥେ
ଦେଶର ଭାଗ୍ୟ ଝୁଲୁଛି ଫାଶି ।

ଆମେ ହଣାହଣି ହେଉଅଛୁଁ ଯେବେ
ତୁମେ ହସି ହସି ଦେଖୁଛ ଖେଳ
ତୁମକୁ ଘାରିଛି କ୍ଷମତାର ନିଶା
ଆମକୁ ଘାରିଛି ଅକାଳ କାଳ ।

ଗାଦି ପାଇଁ ସିନା ଏତେ କଳିଗୋଳ
ଏତେ ମରାମରି, ରକତ-ଝରା
ଜନତାର ପାଇଁ ଆହାକି ଦରଦ
ଛଳନାର ନୀଳ ଗରଳ- ଭରା ।

ଜନତା ଜନତା କହୁଛ ମିଛରେ
ମମତା ଅଛିକି ହୃଦୟ ତଳେ ?
ଆସନର ପାଇଁ କି ଟଣା- ଓଟରା
ଭାଷଣରେ ଆଜି ଆକାଶ ଥରେ ।

ଜାତି - ଧର୍ମର ବିଷ-ସଞ୍ଚାର
କରାଇଦେଲ ଏ ସାରାଟା ଦେଶେ
ସେହି ବିଷେ ଘାରି ଆମେତ ମରୁଛୁଁ
ତୁମେ ହସୁଅଛ 'ଶକୁନି' ବେଶେ ।

ଆମ ଜୀବନର ଦର କମି କମି
ତୁମ ଜୀବନର ବଢୁଛି ଭାଉ
ଆମ ସପନର ଜହ୍ନରାତିକୁ
ଗିଳିଦିଏ ତୁମ ସ୍ୱାର୍ଥ-ରାହୁ ।

ଆମେ ନାଚୁଅଛୁଁ ଥେଇ ଥେଇ କରି
ଦିବସ-ରଜନୀ ତୁମରି ହାତେ
ତୁମେ ନଚାଉଛ ଯେମିତି, ସେମିତି
ନାଚି ନାଚି ଯାଉଁ ମଶାଣି ପଥେ ।

ତୁମେ କେତେବେଳେ କୋଳାକୋଳି ହୁଅ
କେବେ ମୁହାଁମୁହିଁ ଅସ୍ତ୍ର ଧର
ତୁମରି ମହିମା କେମିତି ବୁଝିବୁଁ
ତୁମ ବନ୍ଧୁତା ପାଣିର ଗାର ।

ଆଉ କେତେକାଳ ଖେଳିବ ଏ ଖେଳ
ଆମେତ ହେଲୁଣି ଶୁଖିଲା ହଡ଼ା
ରାମନାମ କହି, ହରିବୋଲ ଦେଇ
ଏବେ ମାଲଭାଇ ଉଠାଅ ମଡ଼ା ॥



# ଆଜିର ପଦ୍ମ

ଆଜିର ପଦ୍ମ ଫୁଟେନି ତଟିନୀ ଜଳେ
ପ୍ରାଚୀର -ପତ୍ରେ ଆଜିର ପଦ୍ମ ଝଳେ ।
ଆଜିର ପଦ୍ମ ଫୁଟଇ ରାସ୍ତା-ଘାଟେ
ପ୍ରାଚୀର-ଗାତ୍ରେ ଆଜିର ପଦ୍ମ ଫୁଟେ ।।

ଆଜିର ପଦ୍ମ ଶତଦଳ ନୁହେଁ ନୁହେଁ
ଭିନ୍ନ ରୂପରେ ଛିନ୍ନ ଦଳ ତା' ଶୋହେ ।
ନାହିଁ ସୁଗନ୍ଧ, ନାହିଁନାହିଁ ତାର ଘ୍ରାଣ
ଆଜିର ପଦ୍ମ ଶୁଷ୍କ- ନୀରସ ପ୍ରାଣ ।।

ଆଜିର ପଦ୍ମ ନୁହଁଇ ଶୁଦ୍ଧ - ପୂତ
ଅମଳ-ବିମଳ-କମଳ ନୁହଁଇ ସେ'ତ ।
ରାଜନୀତି ନାଳ-ନର୍ଦ୍ଦମା ଜଳେ ଫୁଟି
ଶୁଦ୍ଧତା ତା'ର ମାଟିରେ ଗଲାଣି ଲୋଟି ।।

ସ୍ୱାର୍ଥର ହୀନ କଠିନ କରକା ବାଜି
ବିକଚ - ପଦ୍ମ ମଳିନ ଦଗ୍ଧ ଆଜି
ଦେବମନ୍ଦିରେ ସେ ଆଜି ପାଉନି ଶୋଭା
ଗଳି କନ୍ଦିରେ କି କରୁଣ ରୂପେ ଉଭା !!

ଆଜିର ପଦ୍ମ ଭୁଲିଚି ସୌମ୍ୟ ଠାଣି
ଶୁଣିଛି କେବଳ ରମ୍ୟ ଛଳନା- ବାଣୀ ।
କ୍ଷମତାଲୁବ୍ଧ ଅଳି- ଗୁଞ୍ଜନେ ଭୁଲି
ଅନ୍ଧ ନୟନେ ଅଞ୍ଜନ ଯାଏ ବୋଳି ।।

ଆଜିର ପଦ୍ମ ଲୁଣ୍ଠିତ, ମଧୁହରା
ଛଦ୍ମ, କୁଟିଳ, ତିକ୍ତ ଗରଳେ ଭରା ।
ଘୃଣାର ଉଗ୍ର ହିଂସ୍ର ଶାଣିତ ଶରେ
ଆଜିର ପଦ୍ମ ରକ୍ତ-ନଦୀରେ ସନ୍ତ୍ରେ ।।

ମହାଭାରତର ଜାତୀୟ ପ୍ରତୀକ ଆଜି
ମହାନରକର ସଂକେତ ଅଛି ସାଜି ।
ଦିଗ୍‌ବିଦିଗରେ ବିଦ୍ୱେଷ-ବିଷ ବୁଣି
ଆଜିର ପଦ୍ମ ଭୁଲିଛି ସୌମ୍ୟଠାଣି ।।

ଆଜିର ପଦ୍ମ ବିପଣୀବୀଥିରେ ଝୁଲେ
ଯନ୍ତ୍ରଯାନରେ ପଲ୍ଲୀ-ନଗରେ ଘୂରେ ।
ଦିଲ୍ଲୀ ଗାଦିରେ ଚହଟି ଫୁଟିବ କେବେ
ପଟୁଆର ତଳେ ପଟୁଆରୀ ଦଳ ଭାବେ ।।

ଛଦ୍ମବେପାରୀ କୂଟଚକ୍ରୀର କୂଟେ
ଆଜିର ପଦ୍ମ ବଣିକ-ସଦ୍ମେ ଫୁଟେ ।
ଭ୍ରାତୃ - ବିବାଦେ ମତ୍ତ ଜନତା ମାତି
ରକ୍ତ-ତିଳକେ ରଞ୍ଜିତ କରେ ଛାତି ।।

କାଲିର ଦସ୍ୟୁ ଆଜିର ପଦ୍ମ-ପାଣି
ଆଜିର ପଦ୍ମ-ନୟନେ ରକ୍ତ-ଠାଣି ।
ବାଲ୍ମିକୀ ହେବ କାଲିର ରତ୍ନାକର
କଣ୍ଠରେ ତେଣୁ ରାମର ରମ୍ୟ ସ୍ୱର !!

ଆଜିର 'ପଦ୍ମ' ମୁଖରେ ରୁଦ୍ର ହସ
ରୁକ୍ଷ କଠିନ, ଶୁଷ୍କ - ନୀରସ ବେଶ ।
ଜଳରେ ନ ଫୁଟି, ମାଟିରେ ଉଠିଛି ଫୁଟି
ଅଦ୍ଭୁତ ଏକି ପଦ୍ମର ପରିପାଟୀ ??



# ଲେଖ ମୁକ୍ତିର ଇତିହାସ

ଗଣତନ୍ତ୍ରର ବାଦ୍ୟ ବାଜୁଛି ଚଉଦିଗେ
ଖାଦ୍ୟର ବିନା ଲକ୍ଷ ଜୀବନ ଝରିପଡ଼େ ;
ଗଣତନ୍ତ୍ରରେ ମନ୍ତ୍ରୀମାଙ୍କଣା ଚାଲେ ଯେବେ
ପଥେ ଘାଟେ ଆଜି ଶତ ଅନାହାରୀ ମରି ସଡ଼େ ।।

ନୟନରେ କେଉଁ ଭେଳିକ ଲଗାଇ ସ୍ୱାଧୀନତା
ଆସିଥିଲା ଦିନେ ଏ ଦେଶ ନଗରେ ଜନପଦେ ;
ମହଲ ଉପରେ ମହଲ ଉଠୁଛି ଶାସକର
ଜନତାର ବୁକୁ ଥରିଉଠେ ଶତ ଅବସାଦେ ।।

ପୁଞ୍ଜିପତିର କୁଞ୍ଜରେ ଚାଲେ ସୁରାଭୋଜି
ଶୋଷିତ ରକ୍ତେ ପାନ-ପାତ୍ର ଯେ ଭରି ଉଠେ ;
ସୁରା-ଉତ୍ସବେ ସାକୀ-ଅର୍ଚ୍ଚନା ଚାଲେ ଯେବେ
ପାଶବିକତାର ହାସ ଫୁଟିଉଠେ ଓଠ ତଟେ ।।

ଛଳନାର ଫାଁକା ଭଉଁରୀ ଖେଳାଇ ଦେଶସାରା
ଯୋଜନାର ଶତ ଲହରୀ ଯାଉଛି ଖେଳି ଖେଳି ;
ତଥାପି ମରେନା ବେକାର ପେଟର ଭୋକଜାଳା
ହରିକାଠ ତଳେ ଜନତା ପଡୁଛି ନିତି ବଳି ।।

ପଲ୍ଲୀ-ନଗରେ ଘିଅ-ମହୁ ଛୁଟେ ଦେଖ ଦେଖ
ହାଟ ଓ ବଜାରେ ଭେଜାଲ ଖାଦ୍ୟ କିଣାବିକା ;
କଙ୍କାଳ ସାଜେ ନବଭାରତର ନାଗରିକ
ଗଣତନ୍ତ୍ର ଯେ ଭରି ଦେଇଅଛି ଜୀବନିକା ।।

'ସତ୍ୟ'ର ନାମେ ମିଥ୍ୟାର ଯେତେ କାରସାଦି
'ଶାନ୍ତି'ର ନାମେ ମୃତ୍ୟୁର ଜାଲ ହୁଏ ବୁଣା ;
ଟଂକାରେ ଆଜି ତଉଲା ହେଉଛି 'ନ୍ୟାୟ-ନୀତି'
'ଅହିଂସା'ନାମେ ନିରୀହର ବେକ ହୁଏ ହଣା ।।

ଆକାଶେ-ବତାସେ 'ଗରିବୀ ହଟାଅ' ଧ୍ୱନି ଛୁଟେ
ଶୂନ୍ୟ ଗଗନେ ଧ୍ୱନି ଯାଉଅଛି ମିଶି ମିଶି ;
'ଗରିବୀ ହଟେ ନା' ଗରିବ ହଟୁଛି ସମାଜରୁ
ଧନତନ୍ତ୍ରର ବଣିକ ଗଡୁଛି ହସି ହସି ।।

ସ୍ୱାର୍ଥର ପାଇଁ ଚାଲେ ଅର୍ଥର ରାଜନୀତି
ଦେଶସେବା ଆଜି ହେଲାଣି ସ୍ୱାଧୀନ ବ୍ୟବସାୟ ;
ଦୁଷ୍ଟ ଜନତା ପାଇଁ କୁମ୍ଭୀର ଲୁହ ଢ଼ାଳି
ଭଣ୍ଡ ସେବକ କହୁଛି 'ଜନତା ! ନାହିଁ ଭୟ' ।।

ହଠାତ୍-ନେତାରେ ଦେଶଟା ହେଲାଣି ଭରପୂର
'ବୁଲେଟ' ମୂନରେ ଚାଲିଛି 'ବ୍ୟାଲେଟ୍' କିଣାକିଣି ;
'ଲୋକସଭା' ତଳେ ଗଣତନ୍ତ୍ରର ପ୍ରତିନିଧି
ଦଳ ବଦଳାଇ ମୁଦ୍ରା-ଦେବୀର ଧରେ ପାଣି ।।

ମାରି-ମହାମାରି, ବଢ଼ି-ମରୁଡ଼ିରେ ସଢ଼େ ଦେଶ
ଦୁଃଖୀ ଜନତା ମରୁଛି ଯେବେଳେ ଅନାହାରେ ;
ରିଲିଫ୍ ନାମରେ ଚାଲେ ଦୁର୍ନୀତି କାରବାର
ଭାଷଣର ଝଡ଼ ବହଇ 'ବିଧାନ-ଦରବାରେ' ।।

ଶାସନ ଗାଦିର ଆସନ ପାଇବା ପାଇଁ ନିତି
ଦଉଡ ଲାଗିଛି, ପ୍ରତିଯୋଗିତାର ଶେଷ ନାହିଁ ;
କ୍ଷମତାର ଲୁଣି ଲହୁ ଯେ ଚାଖିଲା ଥରଟିଏ
ମଣିଷଖିଆ ସେ ବାଘଠାରୁ ଆଉ ଦ୍ରାହି କାହିଁ ?

ମୋ ଦେଶର କୋଟି ଜନଗଣ ତେଣୁ ଏତେବେଳେ
ଧ୍ୱଂସର ଶେଷ ଭୈରବୀ ନାଚ ଥରେ ହେଲେ ;
ଖଡ୍‌ଗ ଓଟାରି ଚଣ୍ଡୀ-ମାତାର ଶ୍ରୀଭୁଜରୁ
ମହିଷାସୁରର ଶିରକୁ ଲୋଟାଅ ଭୂମିତଳେ ।।

ସୁବିଧାବାଦର ମସ୍ତକେ କରି ପଦାଘାତ
ଶୋଷଣର ଦୃଢ଼ ଶିବିରେ ଶିବିରେ ଜାଳ ନିଆଁ ;
ଖଡ୍‌ଗ ମୁନରେ ଲେଖ ମୁକ୍ତିର ଇତିହାସ
ବକ୍ଷ ରୁଧିରେ ଅଙ୍କନ କର ନିଜ ନାଁଆ ।



# ପ୍ରତିବାଦ କର

ପ୍ରତିବାଦ କର, ପ୍ରତିବାଦ କର ବନ୍ଧୁ !
ଶୟତାନ ପାଇଁ ସ୍ତୁତିଗାନ କର ବନ୍ଦ;
ପ୍ରତିବାଦେ ଥରୁ ଉଚ୍ଛଳ ଜନ-ସିନ୍ଧୁ
ପ୍ରତିବାଦ ସିନା ମୁକ୍ତିର ମଧୁଛନ୍ଦ ।।

ଅତ୍ୟାଚାରକୁ ସହିବାର ନାମ ମୃତ୍ୟୁ
ଅନ୍ୟାୟ-ପଦ ବନ୍ଦନା କରେ ମୂର୍ଖ;
ମୁକ୍ତିର ପଥେ ପ୍ରତିବାଦ ଚିର ସତ୍ୟ
ଭୀରୁ ମରେ ନିତି ନ କରି ଯୁକ୍ତି-ତର୍କ ।।

ଦୁର୍ବଳ ସହେ ଆତ୍ମାର ଅପମାନ
ନପୁଂସକର ମୁଖେ ଝୁଲୁଥାଏ ଚାବି;
କାପୁରୁଷ କରେ କ୍ଷମତାର ଜୟଗାନ
ମୁକ୍ତି ଖୋଜଇ ପାଷଣ୍ଡ-ପଦ ସେବି ।।

ପ୍ରତିବାଦ କରି ଜାଣେନାହିଁ ଯେଉଁ ବ୍ୟକ୍ତି
ଆଖି ବୁଜି ଯିଏ ମିଥ୍ୟାକୁ କହେ ସତ୍ୟ;
ସେ କାହୁଁ ଜାଣିବ ଆଲୋକର ମହାଶକ୍ତି
ହୀନ-ସ୍ୱାର୍ଥର ସେତ ପଦସେବୀ ଭୃତ୍ୟ ।।

ପ୍ରତିବାଦ ଏକ ଲୋହିତ ଅଗ୍ନିଶିଖା
ଅତ୍ୟାଚାରୀର ଦୁର୍ଗକୁ ପାରେ ଜାଳି;
ଅନ୍ଧାରେ ଟାଣେ ମୁକ୍ତି-ଆଲୋକରେଖା
ଭଗ୍ନ ହୃଦୟେ ବଜାଏ ବଜ୍ର-ତାଳି ।।

ଦଳିତ - ମଥିତ-ଅତ୍ୟାଚାରିତ ଯେତେ
ଭାଗ୍ୟ ଆଦରି ନୀରବେ ରହିଛ ଶୋଇ;
ଝରୁଅଛି ନିତି ବିଶ୍ୱର ପଥେ ପଥେ
ପ୍ରତିବାଦ - ସ୍ୱର କଣ୍ଠେ କି ଫୁଟେନାହିଁ ??

ରକ୍ତ - ଚାବୁକେ ଖାଉଚ ଶକ୍ତ ମାଡ଼
ଶକ୍ତି ନାହିଁକି ଖୋଲିବାକୁ ଟିକେ ପାଟି ?
ନୁହେଁ ନୁହେଁ ଏତ ଜୀବନ ମୁକ୍ତିପଥ
ଏ ଯେ ମରଣର ଦୁର୍ଗମ ଗିରିଘାଟୀ ।।

ତୁମେକି ଜାଣିନ ବୀରର ମୃତ୍ୟୁ ନାହିଁ
ଦୁର୍ବଳ ନିତି ମରଇ ଲକ୍ଷେ ଥର;
ଭୀରୁର ଜୀବନେ ମରଣେ ତଫାତ୍ କାହିଁ ?
ଜୀଇବା ମରିବା ସବୁ ତାର ଏକାକାର ।।

ସ୍ତୁତିଗାନେ କେବେ ଫିଟେନି ମୁକ୍ତିବାଟ
ନୀରବେ ସହିବା ଆତ୍ମଘାତୀର ନୀତି;
ଅନ୍ଧରାଜାର ଦରବାରେ ଯେତେ ଭାଟ
ଜାଣିରଖ କେବେ ଚାଟୁରେ ପାହେନା ରାତି ।।

ପ୍ରତିବାଦ କର, ପ୍ରତିବାଦ କର ବନ୍ଧୁ !
ଅନ୍ୟାୟ ଆଗେ ଶାଣିତ ଖଡ୍‌ଗ ତୋଳ;
ପ୍ରତିବାଦେ ଥରୁ ଉଚ୍ଛଳ ଜନ-ସିନ୍ଧୁ
ଗଣସଂଗ୍ରାମେ ପ୍ରାଣ ହେଉ ଉଦ୍‌ବେଳ ।।



# ନିରାଶା ନିଆଁ ଭେଦି ହସିବ ଦିନେ

ଆଜି ଏ ଶରତର ଜୋଛନା ଝର ଝର
ଶିଶିରଧୁଆ ଶୀତ ନିଶାରେ
ପଲକ ପଡ଼େନାହିଁ ପୁଲକ ନାହିଁ ଜାଗେ
ମଦିରା ଭରା ପ୍ରୀତି ନିଶାରେ ;
ଆଖିରେ ଭାସିଯାଏ ଲୁହର କଳାମେଘ
ଛାତିରେ ଚାଲିଯାଏ ବଟାଳି
ନିରାଶା ନିଆଁ ତଳେ ଯାଉଛି ଆଜି ଜଳି
ଆଶାର ନେଉଟିଆ ପଟାଳି ॥

ମଣିଷ ଶିଶୁ ଆଜି ସାହା ଭରସା ତେଜି
ଦାନବ ପାଶେ ପଶେ ଶରଣ
ଜୀବନ ମହାପଥୁ ବିଦାୟ ଘେନି ସେତ
ମରଣ ପଥ କରେ ବରଣ ;
ଆଲୋକ ବିନା ମରି ଅଚିରେ ପଡ଼େ ଝରି
ଲକ୍ଷ ତିମିରର କଟାଳୀ
ନିରାଶା ନଆଁ ତଳେ ଯାଉଛି ଆଜି ଜଳି
ଆଶାର ନେଉଟିଆ ପଟାଳି ॥

ଆହାର ପରେ ଯେବେ ପାହାର ବସେ ପୁଣି
ପିଠିରେ ବସେ ଶତ ଗୋଇଠା
ଏ ମାଟି-ଜନନୀର କୋଟିଏ ସନ୍ତାନ
ଚାଟୁଛି ଅପରର ଅଇଁଠା ;
ଜଣର ନୁହେଁ ଏଯେ ଗଣର ଶାସନ ଯେ
ଲକ୍ଷ ଜୀବନର ଗୋଟାଳି
ନିରାଶା ନିଆଁ ତଳେ ଯାଉଛି ଆଜି ଜଳି
ଆଶାର ନେଉଟିଆ ପଟାଳି ।।

ଏ ଦେଶ ଶାସକର ହସରୁ ବିଷ ଝରେ
କଥାରୁ ଝରେ ଖାଲି ଗରଳ
ମିଛକୁ କରାହୁଏ ନିରାଟ ସତକଥା
ଲଗାଇ ନୟନର ପରଳ ;
ବିରାଟ ବୋଲି ଯାକୁ ବିଚାରୁ ଆମେ ସେତ
ଶୂନ୍ୟ ଆକାଶର ଅଟ୍ଟାଳି
ନିରାଶା ନିଆଁ ତଳେ ଯାଉଛି ଆଜି ଜଳି
ଆଶାର ନେଉଟିଆ ପଟାଳି ।।

ଏ ଦେଶେ ନେତା ଯେତେ ସ୍ୱାର୍ଥ-ବଶ ଖାଲି
ଶୋଷକ ଯେତେ ପୁଣି ପୋଷକ
କଳାର ପୀଠ ପରେ କଳାବଜାର ଚାଲେ
ଶାସକ ହୁଏ ପୁଣି ନାଶକ ;
ପ୍ରଣୟ ବୋଲି ଯାକୁ ସମାଜ କହେ ସେତ
ପ୍ରଳୟମୁଖୀ ପ୍ରାଣ - ଫଟାଳି
ନିରାଶା ନିଆଁ ତଳେ ଯାଉଛି ଆଜି ଜଳି
ଆଶାର ନେଉଟିଆ ପଟାଳି ।।

ଶିଶିର ଭିଜା ଏହି ଶାରଦ ନିଶିଥରେ
ବାଜେନି ହରଷର କାହାଳୀ

ରିକ୍ତ ନୀଡ଼ ସମ ପଡ଼ି ରହିଛି ଆମ
ତିକ୍ତ ଜୀବନର ଚାହାଳି ;
ମନ-ମରାଳୀ ଚଳେ ମରଣ ମୁଖେ ତେଣେ
ହସୁଛି ରଣ-ଚିତା-କୁଟାଳୀ
ନିରାଶା ନିଆଁ ତଳେ ଯାଉଛି ଆଜି ଜଳି
ଆଶାର ନେଉଟିଆ ପଟାଳି ॥

ଜୀବନେ ଚାହଁ ଯଦି ମରଣ ଟାଳିବାକୁ
ସଜାଡ଼ିବାକୁ ଏହି ଦୁନିଆଁ
ନୂତନ ପଥ-ବାହୀ ଆଲୋକ - ରଥେ ଚାଲ
ଦେଖିବ ଆଗାମୀର ସୁନିଆଁ;
ଦୃପ୍ତ ଅଭିଯାନ କର ହେ ସୁରୁ ଆଜି
ଚରଣେ ଦଳି ବାଧା-ବାଟୁଳି
ନିରାଶା ନିଆଁ ଭେଦି ହସିବ ଦିନେ ତୁମ
ଆଶାର ନେଉଟିଆ ପଟାଳି ॥



# ଆମେ କରୁଥିଲୁଁ ଫୁଲର ବେପାର

॥ ଏକ ॥

ଆମେ କରୁଥିଲୁଁ ଫୁଲର ବେପାର
ତୁମେ କରୁଥିଲ ଦେବତା - ପୂଜା
ଆମରି ଗୁଚ୍ଛା ଫୁଲମାଳେ ନିତି
ହେଉଥିଲେ ତୁମ ଦେବତା ସଜା ।
ଦିନପରେ ଦିନ ଏମିତି କେତେ,
ବରଷ ବରଷ ବିତି ଯାଉଥିଲା
ଏଇ କାଲିପରି ଲାଗୁଛି ସତେ ॥

॥ ଦୁଇ ॥

ଭାଇ ଭାଇ ପରି ଆମେ ଚଳୁଥିଲୁଁ
ନଥିଲା ବିବାଦ, ନଥିଲା ଗୋଳ
ତୁମେ କରୁଥିଲ ଦେବ ଅର୍ଚ୍ଚନା
ଆମେ ଦେଉଥିଲୁଁ ପୂଜାର ଫୁଲ ।
ଅଘଟଣ କିଛି ନଥିଲା କାହିଁ ?
ସୁଖ- ଦୁଃଖରେ ସମୟର ସୁଅ
ଯାଉଥିଲା ଆମ ନିଇତି ବହି ॥

## ।। ତିନ ।।

ସହସା ଏମିତି କାହିଁକି ଘଟିଲା
କିଏ ସେ ପେଷିଲା ବିଷର ବାଣ ?
ଆମ ଭିତରର ବିଶ୍ୱାସ ଟିକ
ଭିତରେ ଭିତରେ ଖାଇଲା ଘୁଣ ।
ବିଭେଦ ପାଚେରୀ ହୋଇଲା ଠିଆ,
କିଏସେ ଜାଳିଲା ମନର ବନରେ
ଧର୍ମନାମରେ ହିଂସା-ନିଆଁ ??

## ।। ଚାରି ।।

ଜଳିଲା କୁଟୀର, ପଲ୍ଲୀ, ନଗର
ନିରୀହ ମଣିଷ-ବସ୍ତି କେତେ
ହେଲା ଛାରଖାର, ବହିଲା ରୁଧିର
ଚାହୁଁ ଚାହୁଁ ଆମ ପଲକପାତେ ।
ପଥର ଭିକାରି ସାଜିଲୁଁ ଆମେ,
ଯାହା ପାଇଁ ନିତି ଦେଉଥିଲୁଁ ଫୁଲ
ହେଲୁଁ କଳବଲ ତାହାରି ନାମେ ।।

## ।। ପାଞ୍ଚ ।।

ଜାଣିଲୁଁ ଏଥର ସବୁ ଧରମଠୁଁ
ଗୋଟିଏ ଧରମ ଜଗତେ ବଡ଼
ସବୁ ଦେବତାଠୁଁ ଗୋଟିଏ ଦେବତା
ନୁହଁଇ ଅନ୍ଧ, ନୁହଁଇ ଜଡ଼ ।
ମଣିଷପଣିଆ ତାହାରି ନାମ,
ତାହାରି ବେଳକୁ ମୋଡ଼ିମାଡ଼ି କିଆଁ
ଭଜିବୁଁ ଆଲ୍ଲା, ପୂଜିବୁ ରାମ ??

**॥ ଛଅ ॥**

ସକଳ ଦେବତା, ସକଳ ଧରମ
ଗଲେ ଯାଉ ପଛେ ଚୁଲିକି ଯାଉ
ତୁମର ଆମର ମଣିଷପଣିଆ
ଯୁଗଯୁଗ ଧରି ବିରାଜୁ ଥାଉ ।
ତୁମ ହୃଦୟର ଦେବତା- ଶିରେ,
ଆମ ହୃଦୟର କୁସୁମର ମାଳ
ଶୋଭା ପାଉଥାଉ କାଳର କୋଳେ ॥



# ସେମାନେ ତାକୁ ଭାଙ୍ଗିଦେଲେ

ଏକ ଉନ୍ମତ୍ତ ନୃତ୍ୟର ତାଳେ ତାଳେ
ସେଦିନ ସେମାନେ ତାକୁ ଭାଙ୍ଗିଦେଲେ ।
ପ୍ରକୃତରେ ସେମାନେ କଣ ଭାଙ୍ଗିଲେ
ଶେଷପର୍ଯ୍ୟନ୍ତ ନିଜେବି ହୁଏତ ଜାଣିନାହାନ୍ତି ।

ସେମାନେ 'ଧର୍ମ'ର ବିଷାକ୍ତ ମଦ ପିଇ
ମାତାଲ ହୋଇଥିଲେ ।
ସେମାନଙ୍କ ଘନଘନ ପ୍ରଚଣ୍ଡ ଧକ୍କାରେ
ଅତି ଅସହାୟ ଭାବେ ଟଳିପଡ଼ିଲା
ଖିଲାଣ ପରେ ଖିଲାଣ
ଗମ୍ଭୁଜ ପରେ ଗମ୍ଭୁଜ ।।

ସେମାନଙ୍କ ଟଳମଳ ପାଗଳ ପାଦରେ
ଦୁଲୁକୁଥିଲା ବସୁଧା ;
ସେମାନଙ୍କ ବିକଟାଳ ଉଦ୍ଧତ ହସରେ
କମ୍ପିଉଠୁଥିଲା ଭୟାର୍ତ୍ତ ମେଦିନୀ ;
ଆଉ, ସେମାନଙ୍କ ଉଦଣ୍ଡ ତାଣ୍ଡବ ଧ୍ୱନିରେ
ବିଦୀର୍ଣ୍ଣ ହେଉଥିଲା ପ୍ରଶାନ୍ତ ଆକାଶ ।।

ଏବେ ସେହି ସୁପ୍ରାଚୀନ ଜୀର୍ଣ୍ଣ ଗମ୍ବୁଜର
ଧ୍ୱଂସସ୍ତୂପ ତଳୁ
ଆମେ କେବଳ ଖୋଜିବାର ବ୍ୟର୍ଥ ଚେଷ୍ଟା କରୁଛୁଁ
ବିଶ୍ୱାସର ବିକଳ ବିଗ୍ରହଟିକୁ,

ଯାହା, ସେମାନଙ୍କ ଘନଘନ
ନିର୍ମମ ହାତୁଡ଼ିମାଡ଼ରେ
ଖଣ୍ଡ ଖଣ୍ଡ ହୋଇ
ମିଶିଯାଇଛି କାଳକାଳ ପାଇଁ
ଅପନ୍ତରାର ସେହି
ଧୂସର ମାଟିରେ ।।



# ଅଯୋଧ୍ୟା

ଏଠି ସବୁ ଠିକ୍ ଥିଲା
ସରଯୂ ବି ବହୁଥିଲା
ଯୁଗଯୁଗ ଧରି
ଏବଂ ସିଏ ଗାଉଥିଲା
ମନଖୋଲା ଗୀତ
ଜୀବନର କଳକଳ ଲଳିତ ସଂଗୀତ,
ଆଉ ତା'ର ମୟୂରାକ୍ଷୀ ଜଳ
ଥିଲା ସ୍ୱଚ୍ଛ, ଥିଲା ଅନାବିଳ ।।

ହଠାତ୍ ସେଦିନ କିନ୍ତୁ ଦେଖାଗଲା
ସରଯୂର କୂଳେ,
ସବୁଜ ଶିଉଳିଭରା
କେଉଁ ଏକ ଚୂନଝରା
ପୁରାତନ ଗମ୍ବୁଜ ଉପରେ
ବସିଛନ୍ତି ମୁହାଁମୁହିଁ ହୋଇ
ହୀନ-ଦୃଷ୍ଟି ଜରଦ୍‌ଗବ ଦୁଇ ।।

ଗୋଟିକ ଗଳାରେ ଥିଲା
ତୁଳସୀର ମାଳା,
ଆଉ ତାର ଦେହସାରା
ହୋଇଥିଲା କୁଟା
ରାମାବଳୀ ଚିତା ।।

ଆରେକ ଗଳାରେ ଥିଲା
ଶକ୍ତ ଏକ ତମ୍ୟାର ତାବିଜ,
ମଥାପରେ ଉଡୁଥିଲା
ଅର୍ଦ୍ଧଚନ୍ଦ୍ରୀ ପତାକା ସବୁଜ ।।

ସେମାନଙ୍କୁ ବହୁଦୂରୁ କରି ନିରୀକ୍ଷଣ
କିଛି କିଛି ଦୂରଦୃଷ୍ଟିହୀନ
ଧଳା ଧର୍ମବକ
ନାନା ଦିଗୁ ଉଡି ଆସି
ଅଯୋଧ୍ୟାରେ ହେଲେ ସମବେତ ;
ଚକାଭିଡ଼ି ପକାଇ ପଙ୍ଗତ
ସରଯୂର କୂଳେ କୂଳେ
କମ୍ପାଇ ମେଦିନୀ,
ଆପଣାର ଘୁଣଖିଆ ଧର୍ମନାମେ
ଗାଇଲେ ସଂଗୀତ
ଦେଲେ ଜୟଧ୍ୱନି ।।

ଏହା ଦେଖି ସେହି
ଜରଦ୍‌ଗବ ଶ୍ୟେନ-ପକ୍ଷୀ ଦୁଇ
ସେମାନଙ୍କ ଅଧାବଙ୍କା
ମୁନିଆ ଥଣ୍ଟକୁ
ଆହୁରି ଶାଣିତ କରି
ଧୀରେ ଧୀରେ ଧୀରେ
ପକାଇଲେ ନଭଶ୍ଚୁମ୍ବୀ ଗମ୍ବୁଜ ଛାତିରେ ;
ତା ପରେ ଆପଣା ଡ଼େଣା -
ପିଟିପିଟି ରଣୋନ୍ମତ୍ତ ଉଦ୍ଧତ ଭଙ୍ଗୀରେ
ଆଘାତ ହାଣିଲେ
ତାଙ୍କର ସେ ହିଂସ୍ର ଆଉ ଶାଣିତ ନଖରେ ।।

ଦେଖୁ ଦେଖୁ
ହଠାତ୍ ସୁନ୍ଦର ନୀଳ
ଆକାଶଟା ଦେଖାଗଲା।
ଆଗ୍ନେୟଗିରିର ସମ
ରକ୍ତାଭ-ପିଙ୍ଗଳ,
ଲୋହିତ ପାଲଟିଗଲା।
ସ୍ୱଚ୍ଛନୀରା ସରଯୂର ଜଳ ;
ତାପରେ କେବଳ
ଶବ ଖାଲି ଶବ,
ଶବମୟ ସମଗ୍ର ଅଯୋଧ୍ୟା ;
ଗଳିତ ଶବର ଗନ୍ଧେ
ପ୍ରଦୂଷିତ ସମଗ୍ର ବସୁଧା ।।

କିନ୍ତୁ ଏବେ ସେହି
ଦୃଷ୍ଟିହୀନ ଜରଦ୍‌ଗବ ଦୁଇ
ଶ୍ମଶାନର ଶାନ୍ତି ଖୋଜି ଖୋଜି
କରୁଛନ୍ତି ଶବର ସାଧନା ;
ଶାଣିତ ଚଞ୍ଚୁରେ ଝୁଣି
ଲକ୍ଷ ଲକ୍ଷ ନିରୀହ ଶରୀର
ଗାଉଛନ୍ତି ନିଜ ନିଜ
ଘୁଣଖିଆ ଧର୍ମର ବନ୍ଦନା। ।।



# କଳାହାଣ୍ଡି

ହାଣ୍ଡିରେ ଲାଗୁନି କଳା
ଅଗଣାରେ ଜଳୁନାହିଁ ଚୁଲି
ଶସ୍ୟର ସବୁଜ ସ୍ୱପ୍ନ
ବସୁନ୍ଧରା ଯାଇଅଛି ଭୁଲି ।।

କଳାହାଣ୍ଡି ଏମିତି ଗୋଟିଏ ସ୍ଥାନ
ଯେଉଁଠାରେ ରାଜଦଣ୍ଡ, ରାଜସିଂହାସନ,
ମହାକାଳ ଭ୍ରୂକୁଟୀରେ-
ହୁଏତ ବା ହୋଇଅଛି ଲୀନ;
କିନ୍ତୁ ତାକୁ କରି ବେଖାତିର୍
ସର୍ବଗ୍ରାସୀ କ୍ଷୁଧାର ଶାସନ
ଚାଲେ ଆଜି ଚାଲେ ନିର୍ବିଚାରେ,
ଦାବାଗ୍ନିର ଶିଖା ଠାରୁ ଆହୁରି ଭୀଷଣ
ଶିଖା ତେଜି ଜଠରାଗ୍ନି
ହୁତୁହୁତୁ ଜଳେ ।।

ଅଥଚ ଆକାଶ ଏଠି
ତଥାପି ବି ନୀଳ
ମାଟି କିନ୍ତୁ ହତଶିରୀ
ବିବର୍ଣ୍ଣ - ଧୂସର,

ତା'ଠାରୁ ଧୂସରତର
ସୁବିପୁଳ ଜୀବନର
ଦିଗଛୁଆଁ ସୁଦୀର୍ଘ ପ୍ରାନ୍ତର ;
ଏବଂ ଆଜି ସେ ପ୍ରାନ୍ତର ପରେ
କୂଟଚକ୍ରୀ ଶକୁନିର
ପଶାକାଠି ରହିରହି ଗଡ଼େ ।।

ତଥାପି ବି ଏଠି
ପାହାଡ଼-ଖୋଲରେ ଅବା
କେଉଁ ବନ-ଝରଣା କୂଳରେ
ଯଦି ତୁମେ ଉଖାରିବ ମାଟି,
ତା'ହେଲେ ପାରିବ ଦେଖି
ଜୀବନର ଛନ ଛନ ସବୁଜ ଚାରାଟି
ନେଇ ତା'ର ସ୍ନିଗ୍ଧ ପରିପାଟୀ
ହୁଏତ ବା ରହିଅଛି ଜୀଇଁ ,
ଆଖିତଳେ ଆଗାମୀର
କେତେ ସ୍ୱପ୍ନ, ସମ୍ଭାବନା ବହି ।।

କଳାହାଣ୍ଡି ଖାଲି କଣ
କ୍ଷୁଧାର ମୁଲକ ଏକ ?
ଏଠି କଣ କେବେହେଲେ
ଲାଗିନାହିଁ ମଳୟର
ମହୁଆ ପରଶ ?
ସଲପ ଗଛରେ କଣ
ଝୁଲିନାହିଁ କେବେହେଲେ
ମଧୁଝରା ସୁଧାର କଳସ ?

ମହୁଲଫୁଲର ବାସ୍ନା
କେବେ କଣ ଛୁଟିନାହିଁ
ନିକାଞ୍ଚନେ ଜଙ୍ଗଲେ ଜଙ୍ଗଲେ ?
ଅଣିଶର ଆକାଶରେ
ଜହ୍ନକି ଚହଟି ନାହିଁ ?
ଝରିନିକି ରଶ୍ମିରେଣୁ
ପାହାଡ଼ର ପାଷାଣ ମହଲେ ??

ଆଜି କିନ୍ତୁ
ଭୋକର ମୁଲକ ଏଇ କଳାହାଣ୍ଡି
କେବେହେବ ସୁଖର ମୁଲକ ?
ତା'ଧୂସର ଓଠତଳୁ
ଚହଟିବ କେବେଂ ପୁଣି
ଖିଲି ଖିଲି ହସର ଝଲକ ?
କିଏ ଅବା ଦେବ ତା ଉତ୍ତର ??

ହାଣ୍ଡିରେ ନଲାଗୁ କଳା
ନଜଳୁ ବି ଚୁଲି
ନଝରୁ ନଝରୁ ବର୍ଷା
ଆକାଶରେ ରହିଥାଉ ଝୁଲି,
ତଥାପି ବି ଲକ୍ଷଲକ୍ଷ
ନିରନ୍ନ ନୟନେ କିନ୍ତୁ
ସ୍ୱପ୍ନ ଝରେ ସୁବର୍ଣ୍ଣ ଶସ୍ୟର ।।



# ବିଦୀର୍ଣ୍ଣ ବସୁଧା

ରାତି ପାହିଲାବେଳକୁ
ଭାଙ୍ଗିଯାଇଛି ନୀଡ଼,
ଗାଁ-ଗଣ୍ଡା ପାଲଟି ଯାଇଛି ଶ୍ମଶାନ,
ମଣିଷ ପାଲଟି ଯାଇଛି ମଢ଼ ।
ମାଟି ଆଉ ପଥରର କୁଢ଼ କୁଢ଼
ବିକଟାଳ ରାକ୍ଷସ-ପାହାଡ଼
ଅନାୟାସେ ଦେଇଅଛି ଗିଳି,
ଶତ ଶତ ସୁପ୍ତ ମଣିଷର
ସ୍ୱପ୍ନ-କାନ୍ତ କଳ୍ପନାର କଢ଼ ।।

ସେ କଢ଼ ଆଉ କଣ ଫୁଟିବ ?
ନା, ମଢ଼ ଆଉ କଣ ଉଠିବ ?
ସୂର୍ଯ୍ୟୋଦୟର ଗୈରିକ ସକାଳ
ଗାଉଛି କେବଳ
ସୂର୍ଯ୍ୟାସ୍ତର ସ୍ତବ ।।

ହଠାତ୍ କେଉଁ ଅତଳାନ୍ତ ପାତାଳ ଭିତରେ
ବନ୍ଦୀ ହୋଇ ଯାଇଛି କି
ପଦ୍ମଫୁଟା ଜୀବନର ନଦୀ ?
ରାତି ପାହିଲା ବେଳକୁ
ଗାଁ ପାଲଟି ଯାଇଛି ଶ୍ମଶାନ,
ମଣିଷ ପାଲଟି ଯାଇଛି ମଢ଼,

ମରଣର ବାଲୁଚରେ ହଜି  ହଜି ଯାଇଛି
ଶତ ଶତ ସ୍ୱପ୍ନର ଚୌହଦୀ ;
ଶୋକାର୍ତ୍ତ ପବନର କରୁଣ କଣ୍ଠରେ
ଶୁଭୁଛି କେବଳ
ବିପନ୍ନ ସମୟ ର ବିଷଣ୍ଣ ଚୌପଦୀ ।।

ରାତି ପାହିଲା ବେଳକୁ
ମାଟି ଫାଟି କରିଛି ଆଁ ;
ଆଉ ସେହି ଶବାଖିଆ ଆଁର ଅନ୍ଧାରୁ
ଭାସି ଆସୁଛି କେବଳ
ଆର୍ତ୍ତ ଆତୁର ମଣିଷର
ଆକୁଳ ଚିତ୍କାର ,
ମାଂସଲୋଭୀ ଶାଗୁଣାର ପଲ
ଉଡି ଉଡି  ମାରୁଛନ୍ତି
ଶୂନ୍ୟରେ  ଚକ୍କର ।।

ମାଆର କଅଁଳ ଥନରୁ
କ୍ଷୀର ଶୋଷୁଥିବା ଅବୋଧ ଶିଶୁ
ହଠାତ୍ ଯେମିତି ପାଲଟି ଯାଇଛି
କେଉଁ ପ୍ରାଗ୍‌ଐତିହାସିକ ଯୁଗର
ଧୂସର ଫସିଲ୍ ;
ଆଉ
ଯୁଗ୍ମ ବାହୁବଳୟରେ ବନ୍ଦୀ
ଶୃଙ୍ଗାର-ପ୍ରମତ୍ତ କେଉଁ ତରୁଣ ଦମ୍ପତି
ଯେମିତିକି-
ସମୟର ଦନ୍ତକ୍ଷତେ ବିଭଙ୍ଗ ଓ ବିକଳାଙ୍ଗ
ଦୁଇ ଗୋଟି ପ୍ରାଣହୀନ ପାଷାଣ ପ୍ରତିମା ;

କେଉଁ ଦୁରନ୍ତ କାଳ-ଭୈରବର
ଉଦଣ୍ଡ ନୃତ୍ୟରେ
ସତେବା ଯାଇଛି ଧସି
ଆଦିଗନ୍ତ ବସୁଧାର ସୀମା ।।

ରାତି ପାହିଲା ବେଳକୁ
ସୁନାର ସଂସାର
ଭାଙ୍ଗି ନାରଖାର,
ସୁବର୍ଣ୍ଣ ବସୁଧା କିବା ପାଲଟିଛି
କୁଢ଼ କୁଢ଼ ବିବର୍ଣ୍ଣ ଅଙ୍ଗାର !!

କିନ୍ତୁ ଦିନେ ତା'ର
ଚକ୍ ଚକ୍ ନୀଳ ଆକାଶରେ
ଶଙ୍ଖଚିଲ ମେଲିଦେବ ଶୁଭ୍ର-ଶାନ୍ତ ଡେଣା,
ଗଛର ଗହଳ ଡାଳେ
ମହୁମାଛି ଦେବ ମହୁଫେଣା,
ଆଁ-କରି ରହିଥିବା
ଫଟାମାଟି ଗର୍ଭ ଚିରି
ଝରିଯିବ ସହସ୍ର ଝରଣା ।

ବିଗଳିତ ହାଡ ଓ ମାଂସରୁ
ଗଜୁରିବ ସଂଖ୍ୟାହୀନ ସବୁଜ ଅଙ୍କୁର,
ମେଲିବ ଅଜସ୍ର ଶାଖା
ଅସଂଖ୍ୟ ପ୍ରଶାଖା
ଭରିଯିବ ନାନାଜାତି ହରରଙ୍ଗୀ ଫୁଲ ।
ଆଉ ସେ ବିଚିତ୍ରବର୍ଣ୍ଣା ଫୁଲର ମୁରୁକେ
ନେଇ ପୁଣି ନୂଆ ପରିପାଟୀ,
ହସିବ ହସିବ ଦିନେ ଏହି ଫଟାମାଟି
ବିଦୀର୍ଣ୍ଣ ବସୁଧା ପୁଣି ଉଠିବ ଚହଟି ।।



# ସେଦିନ ଆସିଲା ବନ୍ୟା

ସେଦିନ ଆସିଲା ବନ୍ୟା,
ଧ୍ୱଂସର ଭୂରୁ ନଚାଇ ନଚାଇ
ମୃତ୍ୟୁର ନୀଳ ପଣତ ବିଛାଇ
ଦିଗେ ଦିଗେ ମହା-ପ୍ରଳୟ ସୂଚାଇ
ରୁଦ୍ର - ନଟର କନ୍ୟା ।। ୧ ।।

ଆସିଲା ବନ୍ୟା ଉଜାଡ଼ି ପଡ଼ିଲା ପାଣିର ପାହାଡ଼ ସେ'କି
ଆସିଲା ବନ୍ୟା ଲହରୀର ଫଣା ଊର୍ଦ୍ଧ୍ୱ ଗଗନେ ଟେକି ।
ଆସିଲା ବନ୍ୟା ଭାଙ୍ଗିଲା ଘାଇ ଲଙ୍ଘିଲା ଦୁଇ କୂଳ
ଆସିଲା ବନ୍ୟା ରଚନା କରିଲା ତାଣ୍ଡବ ମହାକାଳ ।
ଲକ୍ଷ ମଣିଷ ସ୍ୱପ୍ନ ହଜିଲା, ଭାଜିଲା ଆଗାମୀ ଆଶା
ଆସିଲା ବନ୍ୟା, ପ୍ରଳୟ-କନ୍ୟା, ଆସିଲା ସର୍ବନାଶ।
ଶତେକ ଜୀବନ -ତରୁ
ହେଲା ଉନ୍ମୂଳ, ଭୂକମ୍ପନରେ ଲୋଟେ ଯଥା ମହାମେରୁ ।।୨ ।।

ହୀରାକୁଦ ତଳ, କଳ କଳ କଳ, ଛଳ ଛଳ ଜଳ-ବେଣୀ
ଘୋର ଘର୍ଘରେ ଯେ କଥା କହିଲା ଶୁଣିଲା ତା' ଫୁଲ୍‌ବାଣୀ ।
ବଲାଙ୍ଗୀରରୁ ପ୍ରଳୟର ଡ଼ାକ ବାଙ୍କୀ ସହର ଡେ଼ଇଁ
କଟକ - ପୁରୀର ତ୍ରିକୋଣ ଭୂମିର ଅଞ୍ଚଳେ ଗଲା ଛାଇ ।
କନ୍ଧମାଳରୁ କ୍ରନ୍ଦନ-ରୋଳ ଉଠିଲା ଆକାଶ ଭେଦି
ମହାନଦୀ ତୁଳେ କାଠଯୋଡ଼ି ପୁଣି ଭାର୍ଗବୀ ଦୟାନଦୀ
ମିଶି ଯାଇ ସତେ ହୋଇଗଲେ ଏକାକାର
ଗଗନ ପବନ ମନ୍ଥନ କଲା ଲକ୍ଷର ହାହାକାର ।। ୩ ।।

ବନ୍ୟା ଆସିଲା, ପ୍ରଳୟ-କନ୍ୟା ଗ୍ରାସିଲା ରୁଦ୍ରରୋଷେ
ବନ୍ୟା ଆସିଲା, ଶତ ଶତ ପ୍ରାଣୀ ଜୀବନର ସନ୍ତ୍ରାସେ ।
ବନ୍ୟା ଆସିଲା, ଦଳେଇଘାଇର ଉନ୍ନତ ଶିର ଚୂରି
ବନ୍ୟା ଆସିଲା, କରାଳ କାଳର ଉର୍ମି -ଚିରାଳ ଧରି ।
ଅସିଲା ବନ୍ୟା, ରଚିଗଲା ତା'ର ଦୁର୍ବାର ଅଭିଯାନ
ଶତ ଜନପଦ-ପଲ୍ଲୀ-ନଗର ପାଲଟିଲା ଶମଶାନ ।
ଜଳ ଖାଲି ଜଳ ମହା ପ୍ରଳୟର ପୟୋଧି ଉଠିଲା ଫୁଲି
ଦିଗ୍ ବିଦିଗରେ ଲୁହର ଭଉଁରୀ ଘୂରି ଘୂରି ଗଲା ବୁଲି ।
ଉଠିଲା କି କଳି ମୃତ୍ୟୁ-ବାଡବ-ଶିଖା ?
ମୁଣ୍ଡ-ମାଳିନୀ, ଖଡ୍‌ଗ-ଧାରିଣୀ ଗ୍ରାସିଲା ରକ୍ତମୁଖା !! ।। ୪ ।।

ଅତି ଅଲିଅଳ ଶିଶୁକୁ ହରାଇ ଆକୁଳେ ଖୋଜିଲା ମାଆ
ପାଣିଘେର ତଳେ ଚିହ୍ନ ହରାଇ ହଜିଗଲା କେତେ ଗାଆଁ ।
ସାତ ପୁରୁଷର କେତେ ଭିଟାମାଟି, ଜନମ ମରଣ ସାଥି
ଜଳ-ରାକ୍ଷସ ନିମିଷକେ ତାର ଜିହ୍ୱାତଳେ ଦେଲା ଚାଟି ।
ଲୋଟିଲା କୁଟୀର,ପ୍ରାସାଦ,ପ୍ରାଚୀର,ପାଣିର ପାହାଡ଼ତଳେ
ହୃଦୟର ରାଣୀ, ନୟନର ମଣି କେତେ ଯେ ଅଶ୍ରୁଜଳେ-
ଖୋଜିଲେ ଆକୁଳେ,ପ୍ରାଣର ଆତୁରେ,ସବୁ ଯେ ହୋଇଲା ବୃଥା
ଅନ୍ତର ତଳେ କାଳ କାଳ ପାଇଁ ରହିଲା ଗୋପନ ବ୍ୟଥା ।
ଚାଟଶାଳୀ ତଳେ ପାଠ ପଢୁଁ ପଢୁଁ ସଲିଳ ସମାଧି ନେଇ
ଗୁରୁ ସହ ଚାଟ କାହିଁ ହଜିଗଲେ କିଏ ତା ପାରିବ କହି ?
କେଉଁ ଅଭାଗିନୀ ଦୂର ପରବାସୀ ବନ୍ଧୁର ଚାହିଁ ପଥ
ବନ୍ଧ ଉପରେ ଏକାକିନୀ ବସି କରିଲା ଅଶ୍ରୁପାତ ।
ପାଣିର ସୁଅରେ ଘୂରି
ହଜିଗଲା ପୁଣି କେତେ ହୃଦୟର ସୁନେଲି ସ୍ୱପ୍ନ- କଳି ।। ୫ ।।

କେତେଯେ ସବୁଜ ଶସ୍ୟ-କେଦାର ପାଣିରେ ହୋଇଲା ଲୀନ
କେତେ ପରିବାର-ଗୃହହରା ହେଲେ, କେତେ ଯେ ବନ୍ଧୁହୀନ
କେତେ ସଂସାର ହେଲା ନାରଖାର,କେତେ ଯେ କୁଟୀର-ରାଣୀ
ହରାଇଲେ ନିଜ ପ୍ରିୟ-ପରିଜନ କିଏ ତା' ପାରିଲା ଜାଣି ?
କେତେ ଗୃହସ୍ଥ ହରାଇ ନିଜର ଜୀବନର ସମ୍ବଳ
ଆକୁଳ ଆଖିରୁ ଢ଼ାଳିଲେ କେବଳ ନୀରବେ ଅଶ୍ରୁଜଳ ।
କେତେ ଧାନବିଲ ହେଲା ବାଲୁଚର ଶବାଖାଇ ନଈ-ସୁଏ
ହସ ଶୁଖିଗଲା କେତେ ହତାଶିଆ ଚାଷୀର କରୁଣ ମୁହେଁ ।
କେତେ ଜନପଦ ହେଲା ଶମଶାନ, ଭାସିଲା ମଣିଷ ମଢ଼
ହାସ୍ୟମୁଖର କେତେ ଯେ ଜୀବନ ସହସା ହୋଇଲା ଜଡ଼ ।
କରାଳ ବନ୍ୟା-ରାହୁ
ଗ୍ରାସିଗଲା ଶତ ଜୀବନ-ଚନ୍ଦ୍ର ନିମିଷକେ ଚାହୁଁ ଚାହୁଁ ।। ୬ ।।

ବନ୍ୟା ଆସିଲା, ବନ୍ୟା ବି ଗଲା ପଦଚିହ୍ନ ତା' ରଖି
ପ୍ରକୃତି ସହ ମଣିଷର ଏହି ସଂଗ୍ରାମ ମୁଖାମୁଖି-
ଚାଲି ଆସିଅଛି ଯୁଗଯୁଗାନ୍ତୁ ଅନନ୍ତ କାଳ ଧରି,
ହାରିଛି ମଣିଷ କେତେବେଳେ ପୁଣି ଜାଗିଛି ରୁଦ୍ର ପରି ।
ଅସୀମ ସାହସେ ବୀର-ବିକ୍ରମେ ହୋଇଛି ଶକ୍ତିଧର
ବୁଦ୍ଧିର ବଳେ ପ୍ରକୃତିକୁ ସେ କରିଛି ତା କିଙ୍କର ।
ପୁଣି କେତେବେଳେ ପ୍ରକୃତି ତା'ର ଧରଛି ରୁଦ୍ର ବେଶ
ଧ୍ୱଂସର ବାହୁ ବିସ୍ତାର କରି ସୃଷ୍ଟି କରିଛି ନାଶ ।
ପ୍ରକୃତି ସହ ମଣିଷର ଏହି ସଂଗ୍ରାମ ଯୁଗେ ଯୁଗେ
ନୂଆ ସଭ୍ୟତା ସୂଚନା କରିଛି ବିଶ୍ୱର ପୁରୋଭାଗେ ।
ଚିର ସଂଗ୍ରାମୀ ମଣିଷର ଏହି ଦୁର୍ଜୟ ମନୋବଳ
ପ୍ରଳୟ-ଗର୍ଭୁ ଫୁଟାଇଛି ପୁଣି ପ୍ରାଣର ପଦ୍ମଫୁଲ ।
ଭସ୍ମ ଭିତରୁ ସୃଜନ -ସ୍ୱପ୍ନ ନିମିଷେ ଉଠିଛି ଜାଗି
ମୃତ୍ୟୁର କୋଳେ ମଣିଷ ହୋଇଛି ଜୀବନର ଅନୁରାଗୀ ।
ନିରାଶାର ଘନ ଅନ୍ଧ-ରଜନୀ ଚିରି
ସାରା ବିଶ୍ୱରେ ଆଶାର ଆଲୋକ ଯାଇଅଛି ଝରିଝରି ।। ୭।।

ବନ୍ୟାତ ତେଣୁ ବନ୍ୟା ଏ ନୁହେଁ ସମ୍ମୁଖ ରଣ ଏଯେ
ବଞ୍ଚିବା ପାଇଁ ପ୍ରକୃତି ସହ ମଣିଷ ଯେ ଆଜି ଯୁଝେ ।
ମନରେ ଦମ୍ଭ ଲୋଡ଼ା ଏଥିପାଇଁ, ହୃଦୟେ ସାହସ ବଳ
ଭାଗ୍ୟ ଆଦରି ପାଇଛି କି କେହି ତା'ର ଈପ୍‌ସିତ ଫଳ ?
ତେଣୁ ମୋ ଦେଶର କୋଟି ନରନାରୀ ଦୁର୍ଗତ ଜନଗଣ
ନିଜର ଭାଗ୍ୟ ନିଜ ବାହୁବଳେ ଗଢ଼ିବାକୁ ହେବ ଜାଣ ।
ଭୁଲିଯାଇ ମନୁ ବନ୍ୟାର ଭୟ ଅନ୍ତରୁ ପୋଛି ଶୋକ
ଆଣିବାକୁ ହେବ ସ୍ୱର୍ଣ୍ଣ-ସକାଳ ନୂତନ ଉଦୟାଲୋକ ।
ଡାକେ ହାତଠାରି ଜନ୍ମମାଟି ତୋ ଡାକେ ତୋ'ର ବିଲ-ବନ
ଡାକୁଛି କେଦାର, ଭଗ୍ନ କୁଟୀର ବନ୍ଧୁ ଓ ପ୍ରିୟଜନ ।
ବାଧା ଓ ବିପଦ ଯେତେ ଅବସାଦ ନିର୍ବିବାଦରେ ତେଜି
ଜାଗିଉଠ ପୁଣି ନବ ଚେତନାରେ ପ୍ରସ୍ତୁତ ହୁଅ ଆଜି
ଫୁଟାଇବା ପାଇଁ ସୁନା-ସ୍ୱପ୍ନର କଳି
ଆଉ ଥରେ ଆଣ ପ୍ରାଣର ବନ୍ୟା ହତାଶାର ମେରୁ ଟାଳି ।। ୮ ।।



# କାରୁତୀର୍ଥ

(ଏକ)

ଚିର ପ୍ରଲୁବ୍‌ଧ ନୟନ ନେଇ
ଚିର ପିପାସିତ ହୃଦୟ ବହି
ଅଙ୍ଗନେ ତୋର ହେ ରୂପଧନ୍ୟା !
କୋଣାର୍କ ଆଗୋ ପାଷାଣୀ-କନ୍ୟା
ଆସିଲି ଯେବେ ମୁଁ
ଆସିଲି ଆଜି,

ଝାଉଁବନ-ବୀଥି ମର୍ମର ତାଳେ
ଦିଗନ୍ତଭେଦୀ ବାଲୁକାର କୋଳେ
କେଉଁ ନଟିନୀର ନୃତ୍ୟ-ମୁଖର
ଥର ଥର ଥର ଚରଣ ନୂପୁର
ଉଠିଲା ବାଜି
କହି କି ପାର ?
ଅଶ୍ରୁ -ସାଗରେ ଭାସି ଯାଉଁ ଯାଉଁ
ଅନ୍ତରେ ମୋର ଜାଗିଲା ଝଡ଼ ।

(ଦୁଇ)

ତୋର ନିର୍ଜନ ବାଲୁକା-ବେଳାରେ
ଚାଲିଲି ଯେବେ ମୁଁ ଚାଲିଲି ପାଦ,
ମୋହରି ଅଧୀର ଚରଣ ଲାଗି କି
ଚରଣ ଲାଗି
ଦୂର ଅତୀତର ସମୟ-ବେଳାରୁ
ଶତ ଅହଲ୍ୟା ଉଠିଲେ ଜାଗି ?
ଅଧରେ ଫୁଟାଇ ହାସ୍ୟ-ରେଖା
ପ୍ରାନ୍ତରେ ତୋଳି ଲାସ୍ୟ-ଲେଖା
ସୁସ୍ମିତା କେତେ ବିସ୍ମିତ କଲେ
ମୃତ୍ୟୁର କୋଳୁ ଜୀବନ ମାଗି,
ମୋହରି ଅଳସ ଚରଣ ଲାଗି କି
ଚରଣ ଲାଗି ?

(ତିନ)

'ଚନ୍ଦ୍ର ଭାଗା'ର ନିର୍ଜନ ନୀଳ ସାଗର ବେଳା
'ସୂର୍ଯ୍ୟ'ର କାହିଁ 'ଚନ୍ଦ୍ର'ର ସହ
ପ୍ରଣୟ-ଖେଳା ;
କାହିଁ ସେଦିନର ବୋଇତ -ଭେଳା,
କାହିଁ ବାରଶହ ବଢ଼େଇ କାହିଁ ?
ହାଇରେ ହାଇ !
ବାଲିର ପାହାଡ଼େ ସବୁକି ଲୁଚିଲେ
ଛାୟା କି କାହାର ଦିଶିବ ନାହିଁ ?
କହ କୋଣାରକ କହ ତୁ କହ
ବାରଶ ବଢ଼େଇ କବର ଉପରେ
ଶୁଭୁଅଛି କିଆଁ ରାଜାର ଜୟ ?

## (ଚାରି)

ଛାଡ଼ି ଜନପଦ, ତୋହରି ପଦେ
                    ଆସିଲି ଯେବେ ମୁଁ ତରୁଣ-କବି
ସମ୍ମୁଖେ ମୋର ଦେଖିଲି ଏକି
                    ଦାରୁଣ ତୋହର କରୁଣ-ଛବି ?
ଝାଉଁବନ-ବୀଥି-ମର୍ମରିତ
                    କ୍ରନ୍ଦନ ରବ ଶୁଭିଲା ଖାଲି ;
ସତେକି ଲକ୍ଷ ଶିଳ୍ପୀ ତା'ର
                    ନୟନୁଁ ଲୋତକ ଦେଇଛି ଢ଼ାଳି !
ବକ୍ଷରୁ ନିଜ ରକ୍ତ ଦେଇ
                    ତୋତେ ଯିଏ ଦେଲେ ଜୀବନ୍ୟାସ
ବାଲୁକା-ବେଳାରେ ସେମାନେ ଶେଷେ
                    ହଜିଗଲେ ହୋଇ ମରଣ-ଦାସ
ଶିଳ୍ପୀର ଜୟ ଘୋଷିଲା ନାହିଁ
                              କେହି ତ କାହିଁ !
ସାଗର-ବେଳାରେ କେତେ ରାତି କେତେ
                    ସଂଧ୍ୟା-ସକାଳ ଗଲା ବି ପାହି,
ଆଜି ଯେବେ ତୋର ବାଲୁକା ବେଳାରେ
                    ଚରଣ ଚିହ୍ନ ଥାପିଲି ମୋର
ବାରଶ'ବଢ଼େଇ ପାଇଲେ କି ସତେ ଜୀବନ୍ୟାସ !
                    ଅଧରେ ଫୁଟିଲା ମଧୁର ହାସ !
ଝାଉଁବନ ତଳୁ ଶତ ଅଶରୀରୀ
                    ଆତ୍ମା ଯେପରି ଉଠିଲେ କହି
ଶିଳ୍ପୀର କେବେ ମରଣ ନାହିଁରେ
                    ମରଣ ନାହିଁ
ସୃଷ୍ଟିର ପ୍ରତି ପରମାଣୁ ତଳେ
                    ସତ୍ତା ତାହାର ରହିଛି ଜୀଇଁ
                    ଯୁଗଯୁଗ ଧରି ସବୁରି ପାଇଁ ।

(ପାଞ୍ଚ)

ତୋହରି ଚରଣେ ଅବନତ ଶତ
ରାଜାର ଶିର
ବାରଣ' ବଢ଼େଇ ନିହଣର ପାଶେ
ରାଜ-ଦଣ୍ଡର କି ଅବା ମୂଲ ?
ପରିଚୟ ତାର ନଥାଉ ଅବା
ମୁଗୁର ପାହାରେ ବରଷ ବରଷ
କଟାଇଛି ଯିଏ ରାତ୍ରି-ଦିବା ;
ପଥର ସହିତେ ପଥର ହୋଇ
ମରଣର ପଥେ ଜୀବନ ବହି
ଅଧରେ ତୋହର ଛୁଟାଇ ଦେଲେ ଯେ
ହୀରାର ହସ
ତନୁରେ ତୋହର ଫୁଟାଇଦେଲେ ଯେ
କାବ୍ୟତାରା,
ଚିକୁରେ ତୋହର ଅନଙ୍ଗର ସେ
ଶାୟକ ହାଣି
ଢ଼ାଳିଦେଲେ ଯେଉଁ ରୂପର ଧାରା,
ନିତ୍ୟ ଉଷାର ଉଦୟ- ରାଗେ
କୋଟି ଜନତାର ଅଶ୍ରୁ-ଉଚ୍ଛୁଳା
ଅନ୍ତର ତହିଁ ଶରଣ ମାଗେ ।।

(ଛଅ)

ଶିଳ୍ପୀ ହାତର ମହାନ-ସୃଷ୍ଟି
ହେ 'କାରୁ-ତୀର୍ଥ'
ତୋ ପଦେ ଆଜି
ହୃଦୟ-ପାତ୍ରୁ ଅର୍ଘ୍ୟ ଦେଉଛି ଅଶ୍ରୁଜଳ,
କେତେ କେତେ ଯୁଗ ଅଭ୍ୟୁଦୟର ଉଦୟାଚଳେ
ତୁ' ତ କାଳଜୟୀ , ଦୁର୍ନିବାର;

ମାଟି-ମଣିଷର କଳ୍ପନାର ତୁ ବିରାଟ-ସାକ୍ଷୀ
ମୋ ଦେଶର କୋଟି ବିନ୍ଧାଣୀର ତୁ
‘ମାନସ-କନ୍ୟା’, ‘ଜୀବନ-ସଖୀ’ ।
ଆଜି ତୋର ଏହି ସୀମାନ୍ତ-ଭେଦୀ
ବାଲୁକା-ବେଳାରେ କେହି ତ ନାହିଁ,
ତୋର ପଦେ ପଦେ ପ୍ରଣତି ଜଣାଏ
ହେ କଳାମୟୀ !
ଦୁର୍ଭାଗା ଏହି ଜୀବନେ ମୋହର ନଘଟୁ କେବେ
ଦେଖିବାକୁ ତୋର ଭଗ୍ନ-ବୁକୁର
ଶାନ୍ତ-କରୁଣ-କାନ୍ତ ରୂପ ;
ଥରଟିଏ ପାଇଁ ଜୀବନ ମୋହର
ଧନ୍ୟ ହୋଇଛି ମାନୁଛି ମୁହିଁ
କାଳଜୟୀ ତୋର କଳାର କବରେ
ସେଥିପାଇଁ ଜାଳେ ଗନ୍ଧ-ଧୂପ ।
ଦେଖିବାକୁ ଆଉ ଚାହେଁନା କେବେ
ତୋହରି ବୁକୁରେ ଧ୍ୱଂସ-ଲୀଳା ;
ବିଦାୟ ବନ୍ଧୁ, ବିଦାୟ ବନ୍ଧୁ !
ଉର୍ମି-ମୁଖର ହେ ନୀଳସିନ୍ଧୁ !
ବିଦାୟ ଆଜି ହେ ‘ପାଷାଣୀ-କନ୍ୟା’ ;
ଚନ୍ଦ୍ରଭାଗାର ବିଜନ-ବେଳା ॥



# ତସ୍‌ଲିମା

ଗୋଟିଏ ନୟନରେ
ଅଗ୍ନିକଳେ ତୁମ
ଆରେକ ଆଖିତଳେ ଲୁହ,
ନିଆଁର ପ୍ରଖରତା
ଲୁହର ବ୍ୟାଥା ନେଇ
ମେଘର ମହ୍ଲାର
ଦୀପକ ରାଗେ ଗାଇ
ଶାଣିତ ଦୃଷ୍ଟିରେ
ନୂତନ ସୃଷ୍ଟିରେ
ଝଲସି ଉଠେ ତୁମ ମୁହଁ ।।

ତୁମେ ତ ତସ୍‌ଲିମା !
ବିଶ୍ୱେ ଅନୁପମା,
ଦୁରନ୍ତ ଚେତନାର ଉର୍ମି ,
ରୁଦ୍ଧ ଜୀବନର
ବଦ୍ଧ କାରାଗାରେ
ତୁମେ ତ ମହାକାଳ-ଘୂର୍ଣ୍ଣି ।
ତୁମେ ତ ଭୈରବୀ
ଜୀବନ-ଗୌରବେ
ଆସିଚ ନାଶିବାକୁ
ନାରୀର ରୌରବେ,

ଧର୍ମ ନାମେ ଯେତେ
ଅନ୍ଧ ପେଚକର
ରୁଦ୍ଧ କରିବାକୁ ପଥ,
ବିଦ୍ଧ କରିବାକୁ
ଲେଖନୀ-ଖଡ୍ଗରେ
ଆସିଛ ମୁକ୍ତିର ଦୂତ ।।

ତୁମେ ତ ଯବନିକା
ଅନନ୍ତ ଯାତନାର
ନାରୀର ମୁକତିର ମୂର୍ତ୍ତି,
ତୁମେ ତ ବହମାନ
ପଦ୍ମାନଦୀ-ଧାରା
ଜ୍ୱଳନ୍ତ ଜୀବନର ସ୍ଫୂର୍ତ୍ତି ।
ସୃଜନ - ଛନ୍ଦରେ ହୃଦୟ କନ୍ଦରେ
ତୋଳିଛ ସ୍ପନ୍ଦନ ; ସୁରଭି ଗନ୍ଧରେ
ଭରିଛ ଧରଣୀକୁ
ବାହିଛ ତରଣୀକୁ
ଆଶାର ପୂର୍ବାଶା ପଥେ,
ହେ ଚିର ଦୂର୍ଜୟା, ହେ ଚିର ଦୁର୍ଭୟା
ବିଶ୍ୱ- ବିବେକର ବିପୁଳ ବିସ୍ମୟା
ଆସିଛ ପ୍ରଳୟର ରଥେ ।।

ନିଃସ୍ୱ ନିଃସହାୟା ନାରୀର ବୁକୁତଳେ
ତମେ ତ ଜଳାଇଛ ବହ୍ନି,
ତୁମରି ଲାଗି ଆଜି ପତିତା, ନିପୀଡିତା
ନିଜକୁ ପାରିଅଛି ଚିହ୍ନି ।

ଧର୍ମ ନାମେ ଯେତେ　　　ମୂର୍ଖ, ନରାଧମ
ଓଗାଳେ ପ୍ରଗତିର　　　ପଥକୁ ଅବିରାମ ,
ମଣିଷ ପଣିଆକୁ　　　ହତ୍ୟା କରି ନିତି
　　　ଜାଳୁଛି ମଣିଷର ଜୁଇ;

ତୁମେ ହିଁ ଅଟ ତାର　　　ମୂର୍ତ୍ତ　ପ୍ରତିବାଦ
ଯୁଦ୍ଧ-ଡାକ ଦେଇ　　　ତୋଳୁଛ ଗୁରୁନାଦ
ଆର୍ତ୍ତ-ଆକୁତିର　　　ଆକୁଳ　ସମ୍ବାଦ
　　　ତୁମେ ତ ଚାଲିଅଛ କହି ।

ଦୁର୍ବିନୀତା ତୁମେ　　　ଅଗ୍ନି　-　ସମ୍ଭୂତା
କରୁଛ　ସଂଗ୍ରାମ　　　ନ ହୋଇ ବିଚଳିତା
ତୁମରି　ସୃଷ୍ଟିର　　　ବଜ୍ର　ଆଘାତରେ
　　　କମ୍ପି ଉଠେ ଆଜି ମହୀ ।

ପାଷାଣ-ଜର୍ଜର　　　ହେ ଗିରି-ନିର୍ଝର
ଅନ୍ଧ　ତମସାର　　　ଲଘି ଦୁଇ ତୀର
ଝରୁଛ ଅବିରତ　　　ହେଉଛ　ବିକ୍ଷତ
ତଥାପି ଗାଉଅଛ　　　ଜୀବନ-ସଙ୍ଗୀତ
　　　ସୃଜୁଛ ମୁକତିର
　　　ଶୁଭ୍ର ଆଲୋକର ବନ୍ୟା ।

ହେ　ଚିର　ବନ୍ଦିତା　　　ହେ　ଯୁଗ-ନନ୍ଦିତା,
ବିପୁଳ ପ୍ରେରଣାରେ　　　ହେ　ଚିର　ସ୍ପନ୍ଦିତା !
ମୌନ-ମୂକ　ମୁଖେ　　　ଦେଇଛ ପଦେ କଥା
ଭରିଛ　ସାହସ　ଓ　　　ଆଣିଛ　ସରସତା,
　　　ତେଣୁ ଯେ ତୁମେ ଚିର-ଧନ୍ୟା
　　　ଅନନ୍ତ ମହାକାଳ -କନ୍ୟା !!



# ତୁମେ ତେଣୁ ପ୍ରିୟ ମୋର

(ଫକୀରମୋହନଙ୍କୁ ନିବେଦିତ)

॥ ଏକ ॥

ପଉଷର ଜୀର୍ଣ୍ଣପତ୍ର ପରି
ମୁଁ ଆଜି ପାରୁନି ଭାବି ତୁମେ କେବେ ଯାଇଅଛ ଝରି ;
ମୁଁ ଭାବି ପାରୁନି ଜମା
ତୁମରି ସେ ସୌମ୍ୟ ସବୁଜିମା
କାଳର କରାଳ ହାତେ
ହରାଇଛି ତାହାର ସୁଷମା ;
ବରଂ ତାହା ଆହୁରି କ୍ରମଶଃ
ଶ୍ୟାମଳୁ ଶ୍ୟାମଳତର ହୋଇ ଘେନେ ନିତି ନୂଆବେଶ ॥

॥ ଦୁଇ ॥

ଏ ଧୂସର ଦଗ୍ଧ ମରୁଭୂମେ
ଫସଲର ସ୍ୱର୍ଣ୍ଣବୀଜ କେବେ ଅବା ବୁଣିଥିଲ ତୁମେ,
ସେକଥା ଯଦିଚ ମୋର ମନେ ନାହିଁ
ତଥାପି ସେ ଉତ୍ପନ୍ନ ଶସ୍ୟର
ମୁହିଁ ଏକ ଅଂଶୀଦାର,
ସେ ସୃଷ୍ଟିରେ ମୁଁ ଆଜି ଭାସ୍ୱର ॥

## ।। ତିନ ।।

ମୁଁ ଏକ ସୀମିତ ବିନ୍ଦୁ,
ମୋ ଆଗରେ ସୀମାହୀନ
ଅନ୍ତହୀନ ବିରାଟ ବିସ୍ତୃତି ;
ଶେଷହୀନ ଆରମ୍ଭର
ତମେ କିନ୍ତୁ ଆଦି ସୂତ୍ରଧର,
ସୃଜନର ଚିରନ୍ତନ ଜୟଯାତ୍ରା ପଥେ
ତମେ ଏକ ଆଗୁଆନ୍ ଦୁର୍ଜୟ ସାରଥୀ
ଦୃପ୍ତ ସେନାପତି ।।

## ।। ଚାରି ।।

ତୁମ ' ଜୀର୍ଣ୍ଣ ପଲ୍ଲବ'ର ଡାକ
ଆଜିବି ମୋ ମନେ ପ୍ରାଣେ
କରେ ନୂଆ ଚେତନା ଉଦ୍ରେକ ।
ଆଗାମୀର ଆବାହନେ ମୁଖରିତ ସେ 'ଜୀର୍ଣ୍ଣ ପଲ୍ଲବ'
ଭାଙ୍ଗିଦେଇ ଅଥର୍ବ ଓ ପ୍ରାଚୀନର ଅହଂକାରୀ ଭାବ
ନୂତନରେ ଆଶୀର୍ବାଦ କରେ ପୁଣି
ଗାଏ ଯେଣୁ ତାର ଜୟଗାନ,
ତୁମେ ତେଣୁ ପ୍ରିୟ ମୋର ଜୀବନର ଆହେ ଚିତ୍ରକର !
ସମୟର ଶ୍ୱେତପତ୍ରେ ତୁମ ନାମ ତେଣୁ ଅମଳିନ ।।



# ଲିଭିଗଲା ପରେ ତଥାପି ଜଳୁଛ

(ଗୋପବଂଧୁଂକୁ ନିବେଦିତ)

ଆଖିରେ ତୁମର ଉଦାର ଆକାଶ
ଶାନ୍ତ ଅଥଚ ସ୍ଥିର,
ଅନ୍ତରେ ତୁମ ଝରେ ଝରେ ଝରେ
କରୁଣାର ବାରିଧାର ।

ଶ୍ମଶ୍ରୁରେ ତୁମ ଜନାରଣ୍ୟର
ନିବିଡତା ଦେଖେ ମୁହିଁ
କଣ୍ଠରେ ଶୁଣେ ମାନବିକତାର
ସଂଗୀତ ମଧୁମୟୀ ।

ସ୍ୱପ୍ନରେ ତୁମ ବାସ୍ତବତାର
କଦମ୍ବ ଫୁଲ ଫୁଟେ
ମହାଭାରତର ମହାଜନତାର
ଜୀବନ-ଯମୁନା ତଟେ ।

ତୁମେ ମୁକ୍ତିର ମହାସଂଗୀତ
ବ୍ୟାପ୍ତ ନିଖିଳ ପ୍ରାଣେ
ମହାଜଡ଼ତାର ଦୁର୍ଗ ଭାଜିଛ
ଦୁର୍ବାର ଅଭିଯାନେ ।

କର୍ମର ମହା-ସରଣୀ ହେ ତୁମେ
ଧରଣୀର ଚିର ସାଥୀ,
ଲିଭିଗଲା ପରେ ତଥାପି ଜଳୁଛ
ଅଲିଭା ଜୀବନ-ବତୀ ।



# ହେ ଆଶାର ଆଲୋକିତ ସରଣୀ !

(ଗୋପବଂଧୁଂଙ୍କ ଉଦ୍ଦେଶ୍ୟରେ)

ମୃତ୍ୟୁର କାରାଗାରେ
ଅମୃତ-ଶିଖା ହେ,
ସ୍ୱାର୍ଥର ଯବନିକା ଟାଳିଲ ;
ବିଶ୍ୱର ଦରବାରେ
ନିଃସ୍ୱର ସଖା ହେ,
କରୁଣାର ବାରିଧାରା ଢାଳିଲ ;
ନିରାଶାର ତମସାରେ
ହେ ଆଶାର ଆଲୋକିତ ସରଣୀ !
ଏ ଜାତିର ଦୁର୍ଦ୍ଦିନେ
ତୁମେ ମହା-ଜନତାର ତରଣୀ ;
ଲୁହ ଆଉ ଲହୁ ଢାଳି
ମୁକ୍ତିର ରଥ ଟାଳି
ପ୍ରଗତିର ପ୍ରଦୀପ ତ ଜାଳିଲ ।।

ଦୁଃଖର ଘନଘଟା
ଘୋଟିଥିଲା ଯେବେ ଦିନେ
ଏ ଜାତିର ଜୀବନର ଆକାଶେ ;
ନିଖିଳର ହାହାକାର
ଭାସୁଥିଲା ଯେତେବେଳେ
ଏ ଦେଶର ଦିଗେ ଦିଗେ ବତାସେ ;
ଅନ୍ଧାର ତୁଟାଇଲ
ତୁମେ ସେବେ ଫୁଟାଇଲ-
ମଧୁଭରା ଫଗୁଣର ପଲାଶ ;

ହରିନେଲ ଅଗଣିତ
　　　　ଆକୁଳିତ ମରମର ପରାସ ;
ଝରାଇଲ ଥର ଥର
　　　　ବାସନ୍ତୀ-ପ୍ରଭାତର ବଉଳ ।।

ସ୍ୱାର୍ଥର ଦାବାନଳ
　　　　ଆଜି ଯେବେ ହୁତୁ ହୁତୁ ଜଳୁଛି ;
ତୁମ କଥା କିଏ ଅବା
　　　　ବସି ବସି ନିତି ନିତି ଭାଳୁଛି ?
ଦରବାରୀ ଆଖଡାରେ
　　　　ତମେ ପଛେ ହଜିପାର,
ଦରଦୀର ମରମରେ
　　　　ତମେ ନୁହଁ ଲିଭିବାର
ଅନାଗତ ଯୁଗ ପାଇଁ
ମରଣ ତ ନାହିଁ ନାହିଁ
　　　　ତମେ ଚିର ଦୀପ୍ତିର ମଶାଲ ।।



# ମୁକ୍ତିର ଉଦ୍ୟତ ତଲୱାର

॥ ଏକ ॥

ତରୁଣର ସ୍ୱପ୍ନ ହେ, ଅରୁଣର ଦୀପ୍ତି
ମୁକ୍ତିର ଉଦ୍ୟତ ତଲୱାର୍ !
ଛିନ୍ନ କରିଛ ତୁମେ ଜନନୀର ବନ୍ଧନ ;
ଜନଗଣ ମୁକତିର ଅବତାର !!
ନେତାଜୀ ହେ ଶୌର୍ଯ୍ୟର ପ୍ରତୀକ
ଅନ୍ଧକାତିର ଆହେ ଆଲୋକ
ନିର୍ଭୀକ ମହାବୀର
ସ୍ୱପ୍ନର ଯାଦୁକର
ଶାଣିତ ଗଡ୍‌ଗର ଖରଧାର୍ !!

॥ ଦୁଇ ॥

ପାଦେ ଦଳି ପରଦେଶୀ
ଶାସକର ଗୋଲାମୀ
ଜନନୀର ପାଦେ ଦେଲ
ଶୋଣିତର ସଲାମୀ
ଦେଶେଦେଶେ ଗଢ଼ିଗଲ
ଆଜାଦୀର ସେନାନି
ଦେଲ ନୂଆ ଆଗାମୀର ସମାଚାର ॥

॥ ତିନ ॥

ଆହେ ଚିର ଅବିଚଳ
ଚଞ୍ଚଳ ଚଳମାନ୍
ଆହେ ଚିର ଦୁର୍ଜ୍ଜୟ
ଦୁରନ୍ତ ଅଭିଯାନ୍
ମରଣ ବି ଗାଏ ତୁମ
ଜୀବନର ଜୟଗାନ୍ ;
ଧନ୍ୟ କରିଛ ତୁମେ
ଏଦେଶର ଧୂଳି-ମାଟି
ଟାଳିଅଛ ଘନ ଘୋର ତମସାର କାରାଗାର ॥



(ନେତାଜୀ ସୁଭାଷଚନ୍ଦ୍ରଙ୍କ ଶତବାର୍ଷିକ ଜୟନ୍ତୀ ଉପଲକ୍ଷେ)

# ହେ ବାଘାଯତୀନ୍ !

ହେ ବାଘାଯତୀନ୍ !
ଯେଉଁ ସ୍ୱପ୍ନ ନେଇ ତୁମେ
ବହୁଦିନ ତଳେ
ଏ ମାଟିକୁ କରିଥିଲ
ତୁମ ଲାଲ ରକ୍ତରେ ରଂଗୀନ୍
ଦେଖୁନକି ଆଜି ତାହା ପଡ଼ିଅଛି ଫିକା ;
ସ୍ୱାଧୀନତା ପୁଣ୍ୟ-ନାମେ
କିଛିଲୋକ ଏଦେଶକୁ ନେଇଛନ୍ତି ଠିକା ।
ଭାଙ୍ଗିଛି ତୁମର ସେହି
ଆକାଂକ୍ଷିତ ସ୍ୱପ୍ନର ସଉଧ,
ବିପନ୍ନ ଭାରତବର୍ଷେ
ଘୋଟିଅଛି ଶୋଷଣର
ଘନକୃଷ୍ଣ ଆଷାଢ଼ୀ ବଉଦ ॥

ହେ ବାଘାଯତୀନ୍ !
ବଜ୍ରହାତେ ଦିନେ ତୁମେ ଧରିଥିଲ ପରା
ଆଗ୍ନେୟ ବଂଧୁକ ସାଥେ
ରକ୍ତମୁଖା ଶାଣିତ ସଂଗୀନ୍ !
ଭାଙ୍ଗିବାକୁ ବିଦେଶୀର
ଶୋଷଣର ବ୍ୟୁହ ;
ମୁକତିର ଯଜ୍ଞଶାଳେ
ଢ଼ାଳଥିଲ ନିର୍ବିଚାରେ
ଆପଣାର ତପ୍ତ ଲହୁ-ଲୁହ ।

ଆଜି କିନ୍ତୁ ସେ ସବୁକି ହେଲା ନିରର୍ଥକ ?
ସ୍ୱରାଜ୍ୟର ମାଳି ଧରି ସିଂହାସନେ ଅଧିରୂଢ଼
କିଛି ଭଣ୍ଡ, କିଛି ପ୍ରବଞ୍ଚକ,
କୋଟି କୋଟି ଜନତାଙ୍କୁ କାଟୁଛନ୍ତି ଚିତା ;
ସ୍ୱାଧୀନତା ଅର୍ଥ ଆଜି
ଶ୍ରୀଚରଣେ ଅର୍ଥର ସଲାମୀ,
ଦଲାଲି, ଶୋଷଣ ଆଉ
ଶାସନର ଶକ୍ତ ନାଲିଫିତା ।

ଗଣତନ୍ତ୍ର ଅର୍ଥ ପୁଣି
ପାଞ୍ଚବର୍ଷ ପାଇଁ ନେଇ କ୍ଷମତାର ପଟ୍ଟା,
ଦରବାରେ ବସି ବସି
ଚର୍ବ୍ୟ-ଚୋଷ୍ୟ ଚୋଷି ଚୋଷି
ନିରନ୍ନ ଜନତା ପାଇଁ କୁମ୍ଭୀର କାନ୍ଦଣା କାନ୍ଦି
କରୁଥିବା ଥଟ୍ଟା ।

ଶୂନ୍ୟଗର୍ଭା ଭାଷଣର ଶୁଷ୍କ ନୀର ଢ଼ାଳି
ଦେଶସାରା ବୁହାଇବା ପ୍ରଗତିର ଧାରା,
'ଗରିବୀ ହଟାଅ' ବୋଲି
ସୃଷ୍ଟିକରି ଚା'କପେ ଝଡ଼
ଲଗାଇବା ଫଳହୀନ 'ଯୋଜନା'ର ଚାରା !!

ଏତେବେଳେ ଅତିକ୍ରମି
ବହୁ ବର୍ଷ, ବହୁ ମାସ, ଦିନ
ମନେପଡ଼ ତୁମେ ଆଜି
ହେ ସଂଗ୍ରାମୀ ଚିର ଆୟୁଷ୍ମାନ !

ପ୍ରଶ୍ନ ଜାଗେ ମନେ,
ତୁମ ଆତ୍ମ-ତ୍ୟାଗର ମହିମା
ସତେ କଣ ମ୍ଲାନହେଲା
ମହାକାଳ କରାଳ ଦଂଶନେ ?
ଅବା କାହା ସ୍ୱାର୍ଥର ଭ୍ରୂକୁଟୀ-
ତଳେ ତୁମ ଆଦର୍ଶର ବିରାଟ ମିନାର
ଧୂସର ଧୂଳିରେ ଆଜି ଯାଇଅଛି ଲୋଟି ??

ତେଣୁ ଆଜି ଥରେହେଲେ
ମାତ୍ର ଥରେହେଲେ
ଅତୀତର ଅନ୍ଧକାର କୋଳୁଁ
ଦେଖାଇ ଦିଅହେ ତୁମେ ସେହି ସମୀବୃକ୍ଷେ,
ଯା' ନିର୍ଜନ ନିଷିଦ୍ଧ କୋଟରେ
ରଖିଦେଇ ଅସ୍ତ୍ର ତୁମ ଆହେ ସବ୍ୟସାଚୀ !
ସହଯୋଦ୍ଧା ସଖା ମେଳେ
ଅଜ୍ଞାତବାସରେ କାହିଁ ଯାଇଅଛ ଲୁଚି ।।

ଆମେ ଚାହୁଁ ତୁମର ସେ
ଗୁପ୍ତଅସ୍ତ୍ର କରିବୁ ଉଦ୍ଧାର ;
ହେ ଦୁର୍ଜୟ, ହେ ଦୁର୍ବାର,
ହେ ସଂଗ୍ରାମୀ ବୀର !
ନୂତନ କୌରବ ବଂଶ ଧ୍ୱଂସ ପାଇଁ
ଡାକେ ନୂଆ କୁରୁକ୍ଷେତ୍ର,
ଲୋଡ଼ା ଆଜି ଅନ୍ୟ ଏକ
ଶତ୍ରୁକ୍ଷୟୀ-ଭାରତ ସମର ।।



# ଗାନ୍ଧିଜୀ ସ୍ମରଣେ

ତୁମେ ଆଜି ମନେପଡ଼
ମର୍ମଦାହୀ ଜ୍ୱଳନର ଅସହ୍ୟ ଉତ୍ତାପେ,
ତୁମେ ଆଜି ମନେପଡ଼
ରକ୍ତପାୟୀ ସଭ୍ୟତାର କ୍ରୁର ଅଭିଶାପେ,
ତୁମେ ଆଜି ମନେପଡ଼
ବିପର୍ଯ୍ୟସ୍ତ ବିବେକର ଖାଣ୍ଡବ ଦହନେ,
ମନେପଡ଼ ତୁମେ ଆଜି
ଏ ଅଶାନ୍ତ ହୃଦୟର ଦଗ୍ଧ ଫୁଲବନେ-
ସ୍ତବ୍ଧ ଯେବେ ଚିତ୍ତ ଓ ଚେତନା,
କେତେଦୂରେ କୁହ ତୁମେ
ହେ ପ୍ରିୟ ଗାନ୍ଧିଜୀ !
ତୁମରି ସେ କଳ୍ପନାର ସ୍ୱର୍ଗରାଜ୍ୟ ?
କେତେ ଦୂରେ ଶାନ୍ତ-ସୌମ୍ୟ ସୁନାର ହସ୍ତିନା ?

ସେଦିନର ମର୍ମଥରା
ରକ୍ତାକ୍ତ ସଂଧ୍ୟାର ସ୍ମୃତି
ଆଜିବି ରହିଛି ମନେ
ବିସ୍ମୃତିର ଶତ ଉଚ୍ଚାରଣେ,
ଆମେ ଯେବେ ଗାଇଥିଲୁଁ
ବସି ବସି ସୂର୍ଯ୍ୟାସ୍ତର ସ୍ତବ ;
ଦେଖିଥିଲୁଁ ସ୍ତବ୍ଧ ନେତ୍ରେ
ବୀଭତ୍ସ ହତ୍ୟାର ଲୀଳା
ରକ୍ତର ଉତ୍ସବ ;

ଏସିଆର ନଭପଟେ
ବିଶ୍ୱର ଆଲୋକରେଖା
ହଜିଗଲ କେଉଁପରି
ଯମୁନାର ନୀଳ ନୀରଧାରେ,
ଲିଭିଗଲ କେଉଁପରି
ମାନବିକତାର ଆହେ ଦୀପ୍ତ ଦୀପଶିଖା !
ମଦ୍ୟପାୟୀ ଝଡ଼ର ଝଂକାରେ,
ମନେପଡ଼େ, ସବୁ ମନେପଡ଼େ ।।

ତୁମକୁ ମାରିଛୁ ଆମେ ତିଳ ତିଳ କରି
ଆମେ ଯେତେ ଛଦ୍ମବେଶୀ ମାରିଚର ଦଳ;
ସତ୍ୟକୁ କରିଛୁଁ ହତ୍ୟା ଯୁଗ ଯୁଗ ଧରି
ମିଥ୍ୟା ଯେଣୁ ଆମର ସମ୍ବଳ ;
ଶୂନ୍ୟର ସିଡ଼ିରେ ଚଢ଼ି
ବିଜୟର ସ୍ୱର୍ଣ୍ଣିତ ଗୌରବେ
ପୂର୍ଣ୍ଣତାର କରୁଛୁଁ ସନ୍ଧାନ ;
ଅନ୍ଧକାର - ମହୋତ୍ସବେ
ଅର୍ଘ୍ୟ ରଚି ଘନ ତମିସ୍ରାର
ଆଲୋକର କରୁଁ ଆବାହନ ।
ହାତେ ଧରି ମଦମତ୍ତ ଦୃପ୍ତ ତରବାରୀ
ଉଡ଼ାଉଛୁଁ ଦିଗେ ଦିଗେ
ଶୁଭ୍ରପକ୍ଷ ଶାନ୍ତିର କପୋତ ;
ଘୂରି ଘୂରି ନରକର
କଙ୍କରିଳ ପଙ୍କିଳ ପଥରେ
ଖୋଜୁଅଛୁଁ କେତେଦୂରେ କାହିଁ ସ୍ୱର୍ଗପଥ !
ଆପଣାକୁ ଆପେ ଭଣ୍ଡି
ଛଳନାର ବଳୟ ଭିତରେ
ଉତ୍‌ଫୁଲ୍ଲ ହର୍ଷର ରୋଳେ

ମାରୁଥିଲୁଁ ଯେବେ କରତାଳି ;
ତୁମେକି ପଡ଼ନି ମନେ
ସେତେବେଳେ
ଶତାବ୍ଦୀର ହେ ଅଗ୍ରସାରଥି !
ବିବେକର ହେ ସତର୍କ ଜାଗ୍ରତ ପ୍ରହରୀ !!

ଲକ୍ଷ୍ୟ ଆଉ ସାଧନାର ସିଦ୍ଧି ପଥେ
ହେ ଅନନ୍ତ ପଥଚାରୀ !
ହେ ଦୁରନ୍ତ ! ହେ ଉତ୍ତାନପାଦ !
ମୃତ୍ୟୁର ସଂଗ୍ରାମେ କିନ୍ତୁ
ଲଭିଅଛ ତମେ
ଚିରନ୍ତନ୍ ଜୀବନର ସ୍ୱାଦ ।
ସୁରୁଚି-ସୁନୀତି ମଧ୍ୟେ
ତୁମେହିଁ ମିଳନ-ବିନ୍ଦୁ
ଅପରୂପ ସମନ୍ୱୟ ପାରିଅଛ ଆଣି,
'ସ୍ୱପ୍ନ' ଆଉ 'ବାସ୍ତବ'ର
ଧ୍ରୁବ ରୂପାୟନେ
ହେ ନିପୁଣ ଦକ୍ଷ କାରିଗର
ଜୀବନର ମହାକାବ୍ୟେ
ବାକ୍ୟ ତବ ଅସରନ୍ତି କର୍ମର କାହାଣୀ ।।

ସ୍ୱପ୍ନର କୋରକ ଦିନେ
ଅବରୁଦ୍ଧ ଆମରି ପ୍ରାଣର
ଥିଲା ଯେବେ ବନ୍ଦୀ ହୋଇ
ନିରାଶା-କୁଜ୍ଝଟୀ ଘେରା ଘନ ଅନ୍ଧକାରେ ;
ତୁମେହିଁ ପ୍ରଥମ ସୂର୍ଯ୍ୟ
ଜୀବନର ନଭଶ୍ଚୁମ୍ବୀ ଉତ୍ତୁଙ୍ଗ ଶିଖରେ
ନବରାଗେ ରଚି ତବ ଶୁଭ ଉଦୟନ,

ଛିନ୍ନ କରି ରଜନୀର
ଘନଘୋର ତିମିର ବନ୍ଧନ,
ଉଷାର ଉଜ୍ଜ୍ୱଳ ହାସେ
ଫୁଟାଇଲ ତାରେ ;
ଗନ୍ଧଭରା ଛନ୍ଦଭରା
ବର୍ଣ୍ଣମୟ ବିଚିତ୍ର ସମ୍ଭାରେ ।।

ଲୁହରେ ଲୁହକୁ ଆଉ
ଲହୁରେ ମିଶାଇ ଲହୁ
ତୁମେଇତ ଫୁଟାଇଲ
ଲକ୍ଷ ରିକ୍ତ ମାନସ-ଶାଖାରେ
ବିଶ୍ୱାସର ଆରକ୍ତ କରବୀ ;
ପ୍ରାଣରେ ପ୍ରାଣ ଓ ପୁଣି
ହସରେ ମିଶାଇ ହସ
ତୁମେହିଁତ ଛୁଟାଇଲ
ଅଗଣିତ ଜୀବନ-ବୀଣାରେ
ଲାସ୍ୟମୟୀ ଆଶାର ପୂରବୀ ।
ଶୀତାର୍ତ୍ତ ଧରାର ବୁକେ
ବସନ୍ତର କଲ ଆବାହନ,
ମୃତନଦୀ ବୁକେ ତୁମେ
ଆଣିଦେଲ ଅଜସ୍ର-ପ୍ଲାବନ ।

ତେଣୁ ଆଜି ଶତାବ୍ଦୀର ଜୟଯାତ୍ରା ପଥେ
ଶକ୍ତିମାନ ହେ ଅଗ୍ର-ପଥିକ !
ସମୟରେ ମହାକାଶେ
ତୁମେ ଚିର ଦୀପ୍ତିମାନ,
ତୁମେ ଚିର ବହ୍ନିମାନ
ଅନିର୍ବାଣ ଜ୍ୱଳନ୍ତ ଜ୍ୟୋତିଷ୍କ ।।



(ଗାନ୍ଧିଜୀଙ୍କର ଜନ୍ମ ଶତବାର୍ଷିକୀ ଅବସରରେ ଆକାଶବାଣୀର ଜାତୀୟ କାର୍ଯ୍ୟକ୍ରମରେ ବିଭିନ୍ନ ଭାରତୀୟ ଭାଷାରେ ଅନୂଦିତ ହୋଇ ପ୍ରସାରିତ ।)

# ସ୍ୱାଧୀନତା କଥା ପଚାରନା

॥ ଏକ ॥

ସ୍ୱାଧୀନତା କଥା ପଚାରନା ଆଉ ପଚାରନା,
ସ୍ୱାଧୀନତା ସେତ ବଣ ବରକୋଳି
ଖୋଜିଲେ ହେବୁ ତୁ ବାଟବଣା,
ପଚାରନା ଭାଇ ପଚାରନା ।

ସ୍ୱାଧୀନତା ଆଜି କଳାବେପାରୀର ଗଳାମାଳ
ଭିକାରୀ ହାତର ଭିକଥାଳ,
ସ୍ୱାଧୀନତା ଆଜି ଗରିବ କୁଲିର ଭଙ୍ଗାଚାଳ
ଭୋକିଲା ପେଟର ନିଆଁଝୁଲ,
ଭୋଅଟ ବେପାରୀ ନୋଅଟ ବିଡ଼ାର କାରସାଦି
ସ୍ୱାଧୀନତା ଆଜି ହେଲାଣି ତମାଦି
ଭୁଲିଲାଣି ତାର ବୁନିଆଦି ।
ପଚାରନା ଆଉ ପଚାରନା
ପଚାରିଲେ ଭାଇ ସ୍ୱାଧୀନତା କଥା
ମଥା ଘୂରି ହେବୁ ବାଟବଣା ॥

॥ ଦୁଇ ॥

ସ୍ୱାଧୀନତା କେଉଁ ବାଉଁଶରାଣୀର ଯାଦୁଖେଳ,
କ୍ଷମତା ମାତାଲ ନାଲି ବୋତଲର ଖୋଲା ଠିପି,
ଟଙ୍କାଥଳୀର ରଣଝଣ ଆଉ କଳରୋଳ,
ରାଜନୀତି ଦଳ ସିନ୍ଦୁକ ତଳ ଅସରପି ।
ସ୍ୱାଧୀନତା ଆଜି ଧଳାହାତୀ ଦଳ ସଂଗିନୀ,
ସ୍ୱାଧୀନତା ଆଜି ନାଲିଫିତା ତଳେ ବନ୍ଦିନୀ,
ସ୍ୱାଧୀନତା ଆଜି ନୁହେଁ ଅତୀତର ମୁକତିର ରଣ-ରଂଗିନୀ ।

ଶୀତତାପ ଘରେ
ଆଜି ଅବିଚାରେ
ସ୍ୱାଧୀନତା ଗଣଧର୍ଷିତା,
କଟୁଆଳ ପୁରେ
ସ୍ୱାଧୀନତା ପୁଣି
ଅସହାୟେ କେଶକର୍ଷିତା,
ନିଖୋଜ ହୋଇଛି ସ୍ୱାଧୀନତା ଆଜି
ଖୋଜିଲେ ମିଳୁନି ତା'ଠିକଣା
ପଚାରନା ଭାଇ ପଚାରନା
ଯେତେବି ଖୋଜିଲେ ପାଇବୁ ନାହିଁରେ
ଖୋଜି ଖୋଜି ହେବୁ ବାଟବଣା ।

**।। ତିନ ।।**

ସ୍ୱାଧୀନତା ଆଜି କୁଲି ମଜୁରିଆ-
ଚିରାକନା ତଳେ ଫରଫର,
ମରୁଡ଼ି-ପୀଡ଼ିତ ଗରିବ ଚାଷୀର
ମରମ ଉଛୁଳା ହାହାକାର,
ଦୁଃଖିନୀ ଝିଅର ଫଟା କପାଳର କଳାଗାର,
ଅଭାଗିନୀ କେଉଁ ବହୂଟି ଆଖିର
ଅମାନିଆ ଲୁହ ଝରଝର,
ଭୋକିଲା ମାଆର ବୁକୁରୁ ଚିପୁଡ଼ା
ଶୁଖିଲା ଥନର ଲହୁଧାର,
ଦେଶୀ ଓ ବିଦେଶୀ ବେପାରୀ ଜାଲରେ
ସ୍ୱାଧୀନତା ଖାଲି ଥରହର,
କ୍ଷମତା-ଠାକୁର ଗୁଣ କୀର୍ତ୍ତନେ
ମର୍ଦ୍ଦଳ, ଖୋଳ, କରତାଳ,
ଚାଟୁକାର ଦଳ ନର୍ତ୍ତନ ପୁଣି ହରିବୋଲ,
ଦିନ ଦିପହରେ କଳାଟଙ୍କାର କାରବାର,

ଧର୍ମକୁ ଖାଲି ଆଖିଠାର,
ଖୋଜିଲେ ହେବୁତୁ ହରବର ଭାଇ
ପାଇବୁ ନାହିଁ ତା' ଥଳକୂଳ ।
ପଚାରନା ତେଣୁ ପଚାରନା
ଯେତେ ଖୋଜିଲେବି ପାଇବୁ ନାହିଁରେ
ଖୋଜି ଖୋଜି ହେବୁ ବାଟବଣା ।।

**।। ଚାରି ।।**

ସ୍ୱାଧୀନତା କଣ ପୋଥି ବାଇଗଣ ସୁଆଦିଆ ?
ଜନ-ଚେତନାର ଭାଗବତ ସେତ
ଗଣ-ଚାହାଳୀର ପଣକିଆ ।
ଘୋଷି ଘୋଷି ତାକୁ
ଲଢ଼ି ଲଢ଼ି ତାକୁ
ପାଇଲୁ ଯଦିବା ବହୁକାଳେ,
କ୍ଷମତା-ମଦରେ ଟଳଟଳ ମହା-
ମହୀରାବଣର ବାହୁବଳେ
ଭିଡ଼ିମୋଡ଼ି ହୋଇ ମୁହଁ ମାଡ଼ିଦେଇ
ଶୋଇ ରହିଛି ସେ ରସାତଳେ,
ଖୋଜିଲେ ତୁ କାହୁଁ ପାଇବୁ ବା ଆଉ
ଲୁହ ଢ଼ାଳୁଛି ସେ ନୀରବରେ ।

ସ୍ୱାଧୀନତା ତୋର ରତନରେ,
ପାଲଟିଛି ସିଏ କାଚକଣ୍ଢେଇ
ସାଇତା ହୋଇଛି ଯାଦୁଘରେ
ଯତନରେ ଅତି ଯତନରେ ;
ଆଣିବା ପାଇଁ ତୁ ବଢ଼ାଇଲେ ହାତ
ଖସିପଡ଼ି ସିଏ ହେବ ଚୂନା,
ପଚାରନା ଭାଇ ପଚାରନା ।।

**॥ ପାଞ୍ଚ ॥**

ପ୍ରିୟତମା ସେହି
ସ୍ୱାଧୀନତା ପାଇଁ
ଲଢ଼ିଥିଲୁ ଦିନେ ଲଢ଼ିଥିଲୁ,
ଗୋରା କାରାଗାରେ ସଢ଼ିଥିଲୁ ;
ଗୁଳି ଗୋଳା କେତେ ଖାଇଥିଲୁ ପୁଣି
ଲୁହ ଲହୁ କେତେ ଢ଼ାଳିଥିଲୁ ;
ଟାଳିଥିଲୁ କେତେ ଲୁହାର ଶିକୁଳି, କାରାଗାର,
ହୋଇଥିଲୁ ପାରି ରକତର ନଦୀ, ପାରାବାର,
ଆଜି କିଆଁ ତୋର ହୀନିମାନ ଦଶା ?
ବାହାପିଆଙ୍କର କାରବାର,
କୋରିକୋରି କଲେ ଦେଶଟାକୁ ଆହା
ବାଉଁଶର ପୋଲ, ନାରଖାର,
ଫୁଟାଇଲେ ବାଣ, ବଜାଇଲେ ଢ଼ୋଲ ଆପଣାର,
ଦେଖି ଏ ତାମସା
ଫୁଟୁନାହିଁ ଭାଷା
ଆଖିରୁ ଝରୁଛି ଲୁହଧାର ଆହା ଲୁହଧାର ।
ପଚାରନା ତେଣୁ ପଚାରନା,
ପଚାରିଲେ ଭାଇ ସ୍ୱାଧୀନତା କଥା
ସୁନାର ସପନ ହେବ ଚୂନା ॥

**॥ ଛଅ ॥**

ସ୍ୱାଧୀନତା ଆଜି ଆକାଶ କଇଁଆ
ଖୋଜିଲେ ପାଇବୁ କହ କାହୁଁ ?
ଅଚାନକେ ତାକୁ ଗିଳି ପକାଇଛି
କୂଟ କପଟିଆ କାଳରାହୁ,
କେମିତି ଝରିବ ଘିଅ-ମହୁ ?
କ୍ଷମତା ମାତାଲ - ସ୍ୱାର୍ଥ ବୋତଲ
ଭିତରେ ଭିତରେ ରହିରହି

ବାହୁନୁଛି ତୋର ସ୍ୱାଧୀନତା-ପ୍ରିୟା
ବାହୁନୁଛି ଆଜି କଇଁକଇଁ,
ବାହୁନୁଛି ତୋର ଜନମ ମାଟିର
ସହର-ନଗର-ଗାଁ ଭୂଇଁ,
କେମିତି ଫୁଟିବ ଜନ-ଜୀବନର
କଅଁଳ ସତେଜ ନୀଳକଇଁ ?
ମୁକୁଳାଇବାକୁ
ଆଉଥରେ ତାକୁ
ବଢ଼ାଇ ଦେ ତୋର ବୀରବାହୁ,
ଢ଼ାଳି ଦେଏ ତୋର ଲୁହଲହୁ
ଅକଲରୁ ତୋର ଶିକୁଳି ଫିଟାଇ
ହଟାଇ ଦେଏରେ କାଳରାହୁ
ଅକାଳ ହଟିବ ସକାଳ ଆସିବ ଚାହୁଁ ଚାହୁଁ ।

ପଚାରନା ଭାଇ ସ୍ୱାଧୀନତା କଥା ପଚାରନା
ପଚାରିଲୁ ଯଦି କହିବାକୁ ମୋର ନାହିଁ ମନା
ଥରେ ହେଲେ ମୁହଁ ପଛକୁ ଫେରାଇ
ଆଗକୁ ଟିକିଏ ଅନା ଅନା
ଆଗରେ ଉଡୁଛି ତୋର ସ୍ୱାଧୀନତା-
ରକତକେତନ, ନାଲିବାନା
ତୋର ମୁକତିର
ଗଣ ଶକତିର
ପତିତପାବନ ନାଲିବାନା ।।



(ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ ଭୁବନେଶ୍ୱର ଦୂର ଦର୍ଶନ୍ କେନ୍ଦ୍ର ଦ୍ୱାରା
୧୨ ଅଗଷ୍ଟ - ୧୯୯୭ରେ ଅନୁଷ୍ଠିତ 'ମୁକ୍ତି ଶତଦଳ' (କବି ସମ୍ମିଳନୀ)
କାର୍ଯ୍ୟକ୍ରମରେ ପଠିତ ଓ ସିଧା ପ୍ରସାରିତ)

# ସାକ୍ଷାତକାର କବିତାରେ

ସମ୍ପାଦନା :

ଲକ୍ଷ୍ମୀକାନ୍ତ ତ୍ରିପାଠୀ

ସଂଯୋଜନା :

ଗଙ୍ଗାଧର ବିଶ୍ୱାଳ

# ସାକ୍ଷାତକାର : କବିତାରେ

❑ ହେ 'ମହାଜୀବନ' ବିଦ୍ରୋହୀ କବି ହେ ବ୍ରଜନାଥ!
ବିପ୍ଳବ-ବିଜୟୀ କବିସମାଜର ମୁକୁଟ - ମାଥ ।
ସାକ୍ଷାତକାର ଦେଇଅଛ କେତେ ମୌଖିକରେ
ଗଦ୍ୟଭାଷାରେ ସାକ୍ଷାତକାର ଦେଇଛ କାରେ ।
ଅନୁମତିଟିଏ ଲୋଡୁଛି କବି ହେ ତୁମରି ହାତେ
ପଦ୍ୟଭାଷାରେ ସାକ୍ଷାତକାର ଦେବକି ମୋତେ ?

❑ ଲକ୍ଷ୍ମୀଙ୍କର କାନ୍ତ ତୁମେ
ମୁଁ ଅଟଇ ବ୍ରଜପୁର ନାଥ ;
ଏକ ଆତ୍ମା, ଭିନ୍ନ ଦେହ
ମିଳାଅ ହେ କବିତାର ହାତ !
ଯେଉଁ ପ୍ରଶ୍ନ କରିଅଛ
ଯଥାସାଧ୍ୟ ଦେଉଛି ଉତ୍ତର ;
ପ୍ରଥମେ ଜଣାଏ ମୁହିଁ
ମୋ ପାଠକେ ନମ୍ର ନମସ୍କାର ॥

❑ କବିତା ମାଧୁରୀ କେବେଠୁ ଚାଖିଲ
କେବେଠୁ ଶିଖିଲ କବିତା ଭାଷା ?
କେବେଠାରୁ କବି - ହୃଦୟେ ତୁମର
ଉଦୟ ହୋଇଲା କବିତା ଉଷା ?

❑ ସେତେବେଳେ ମୋର ବୟସ ବା'ର
 ଇସ୍କୁଲେ ଥିଲି ଛାତ୍ର ମୁହିଁ ;
ସ୍ୱାଧୀନ ହୋଇଲା ଆମରି ଦେଶ
 ପୁଲକେ ଜାଗିଲା ଭାରତ-ଭୂଇଁ ।
ମନରେ ଜାଗିଲା ନବୀନ ଆଶା
 ଧରିଲି ଲେଖନୀ, ଲେଖିଲି ଗୀତ ;
ସେହିଦିନ ଠାରୁ କବିତା ସହ
 ଛନ୍ଦି ଦେଇଛି ଏ ମୋର ହାତ ।।

*❑ ବିଦ୍ରୋହୀ କବି ! ପ୍ରେମ କବିତାରେ*
 *ବିପ୍ଳବ ବାଣୀ ଭରିଛ*
*ବିପ୍ଳବ ଲାଗି କବିତା ଲେଖିକି*
 *ପାଠକର ମନ ହରିଛ ?*
 *ବ୍ୟଙ୍ଗର ପଥ ଧରିଛ*
*କେମିତି ହେ କବି ଗୋଟିଏ ଫାଶରେ*
 *ତିନୋଟି ଶିକାର କରିଛ ?*

❑ ବିଦ୍ରୋହ କୁହ, ବିପ୍ଳବ କୁହ,
 ହେଉ ଅବା ପୁଣି ବ୍ୟଙ୍ଗ
 ସେ ମୋ' - କବିତାର ଅନୁଷଙ୍ଗ
ଏହାରି ଭିତରେ ପ୍ରେମର ଚେତନା
 ବୋଳିଦିଏ ନୂଆ ରଙ୍ଗ ।
ମଣିଷକୁ ଯିଏ ଭଲ ନ ପାଇଛି
 ସିଏ କି କରିବ ସୃଷ୍ଟି ?
ଆତ୍ମମଗ୍ନ କବିର କବିତା
 ଶୀକର ବିହୀନ ବୃଷ୍ଟି ।।

❑ *ପାଠକ ମନରେ କେଉଁ ଭାବ ତୁମେ*
*ଭରିବାକୁ ଚାହଁ କବିବର*
*ଚାହଁକି କବିହେ ତୁମ କବିତାରେ*
*ସମାଜର ହେଉ ଉପକାର ?*

❑ କବି ନୁହେଁ କେବେ
ମଣିଷ ସମାଜୁ ଭିନ୍ନ,
ସୃଷ୍ଟି ତାହାର କେଉଁପରି ଅବା
ହୋଇବ ତହିଁରୁ ଛିନ୍ନ ?
ବିଦ୍ରୋହ, ପ୍ରେମ, ବ୍ୟଙ୍ଗ, ଯା'କିଛି
କବିତାର ମୋର ଧର୍ମ,
ପାଠକକୁ ଦେଉ ମୁକ୍ତ ଚେତନା
ବୁଝୁ ସେ ତାହାର ମର୍ମ,
ଫିଙ୍ଗି ଦେଇ ସେ ଛଳନା - ବର୍ମ
କରୁ ଅନୁରୂପ କର୍ମ ॥

❑ *ଏବେତ ଦେଖୁଛି ମୁଁ କବିତା ନାମ ଶୁଣି*
*ଆଛା ଲୋକମାନେ ଦିଅନ୍ତି ଆଖିବୁଜି*
*କେମିତି କୁହ କବି ! ପାଠୁଆ ଲୋକମାନେ*
*କେମିତି କବିତାକୁ ପଢିବେ ଖୋଜିଖୋଜି ?*

❑ କବିତା ନୁହେଁ କଲମ ଚାଷ
ନୁହଁଇ ଖାଲି ଆତ୍ମରତି,
'ଅର୍ଥ ସହ ଶତ୍ରୁତା'ରେ
ଗର୍ବ ଭରେ ଫୁଲାଇ ଛାତି
ଚାଲିବା ନୁହେଁ କବିର କାମ,
ହୃଦୟ ସହ ହୃଦୟ ଯୋଡ଼ା-
ନ କରିପାରେ କବିଟି ଯଦି
କବିତା ତା'ର କିପାଇଁ ଲୋଡ଼ା ?

ଶବ୍ଦ ସହ ଶବ୍ଦ ଘଷି
ସୃଷ୍ଟି କରି ଇନ୍ଦ୍ରଜାଲ
କବିତା କେବେ ଯାଏନା ଲେଖା
ସଜୋରେ ପିଟି ଆପଣା ଢୋଲ ।
କବିତା ହେଲେ ଛଳନାହୀନ
ରହିଲେ ତହିଁ 'କଳା'ର ପୁଟ
ରସିକ ମନ ପାରିବ ମୋହି
ପାରିବ ସହି 'କାଳ'ର ଚୋଟ ।।

❒ *'ମରୁ ଗୋଲାପ'ର କବିତା ବହିରେ*
*କହିଛ ମରୁ ଓ ଗୋଲାପ କଥା*
*'ନିଜସ୍ୱ ସଂଳାପ' କବିତା ଗ୍ରନ୍ଥେ*
*ବାଢିଛ ଦରଦୀ ପ୍ରାଣର ବ୍ୟଥା ।*
*'ସଭ୍ୟତାର ମୁହଁ 'କବିତା ବହିରେ*
*ସଭ୍ୟତା ମୁଖା ଦେଇଛ ଖୋଲି*
*ଗହନ 'ମନର ମାନଚିତ୍ର'ରେ*
*ମନର ଚିତ୍ର ଦେଇଛ ମେଲି ।*
*'ନିଃଶବ୍ଦ ପ୍ରତିବାଦ'ରେ କରିଛି*
*ପ୍ରତିବାଦ ତୁମ ବିଦ୍ରୋହୀ ମନ*
*'ହେ ମହାଜୀବନ' କବିତାରେ ତୁମେ*
*ମହାଜୀବନର କରିଛ ଗାନ ।*
*'ଲଘୁ ଶତକ' ରେ କୁତୁକୁତୁ କରି*
*ଚିମୁଟି ଦେଇଛ ବିପଥ ନରେ*
*'ଏକ ଏକ ଏକପଦୀ'ର ମୁକ୍ତା*
*ଅଜାଡି ଦେଇଛ ରସିକ କରେ ।*
*ଆଜ କେଉଁ ଭାବ କବିତା ଫୁଲରେ*
*ଭାବିଅଛ ତୁମେ ଗୁନ୍ଥିମାଳା*
*ପୂରାଇବ କବି ! କେତୋଟି ମାଳାରେ*
*ଓଡ଼ିଆ ସାହିତ୍ୟ ଜନନୀ ଗଳା ?*

❑ ଦୀର୍ଘ ପଚାଶ ବରଷ ଧରି ମୁଁ
ଫୁଟାଇ ଆସୁଛି କବିତା - ଫୁଲ,
ସେ ଫୁଲରୁ କେବେ ମହୁ ବରଷିଛି
କେବେବା ଝରିଛି ନିଆଁର ଝୁଲ ।
ଆଉ ଅବା କେତେ କବିତାର ଫୁଲ
ଫୁଟାଇ ପାରିବି କୁହ ହେ ତୁମ୍ଭେ ?
ତଥାପି ମୋହର ମନର ଚିବୁକେ
ଯେତେବେଳେ ଆସି ଭାବନା,ଚୁମେ,
ଉଲୁସି ଉଠି ମୁଁ ଗୁନ୍ଥି ଦେଉଛି
ନୂଆନୂଆ କେତେ କବିତା - ମାଳା,
କିଏବା ଦେଉଛି ଗାଳି ଉପହାର
କିଏ ପୁଣି ଦିଏ ବରଣ - ଡାଲା ।
ସେ କଥାକୁ ତିଳେ ନଜର ନଦେଇ
ଚାଲିଛି ଆଗକୁ ଆଗକୁ ମାଡି,
ସୃଜନେ ଛନ୍ଦେ, ଜୀବନାନନ୍ଦେ
ସ୍ୱପ୍ନ ବିଭୋର କବି ମୁଁ ଖାଲି ।
କବିତା-ଫୁଲର ଶେଷ ଅଛି କଣ ?
ଫୁଟାଇ ପାରିଲେ ଫୁଟିବ ସେତେ,
କବିଟି ଭିତରେ ସୃଜନ କ୍ଷମତା
ଯେତେଦିନ ଯାଏ ରହିଛି ଯେତେ ।
ସ୍ୱାଧୀନତାର ଏ ପଚାଶ ବରଷ
ମୋର ସାଧନାର ସ୍ୱର୍ଣ୍ଣସାଲ,
ସ୍ୱପ୍ନଭଂଗ ଜାତି ଇତିହାସ,
କୂଟଚକ୍ରୀର ଇନ୍ଦ୍ରଜାଲ,
ସନ୍ତ୍ରାସ-ବିଷେ ଜର୍ଜରିତ ଏ
ଜାତିର ଜୀବନେ ମରଣଜ୍ୱାଳା,
ଏ ସବୁକୁ ନେଇ କବିତାରେ ମୁହିଁ
ଗୁନ୍ଥିଛି ଯେଉଁ କୁସୁମମାଳା,

'ହେ ମୋର ସ୍ୱଦେଶ' କାବ୍ୟଗ୍ରନ୍ଥେ
ଉପହାର ଦେବି ଭାବିଛି ମନେ,
ଅଦୂର ଆଗାମୀ ଦିନରେ ହୁଏତ
ଭେଟିବି ମୋ ପ୍ରିୟ ପାଠକଗଣେ ।।

❑ *ତୁମ କବିତାକୁ ଯଦି*
*କେହି କେବେ ନ କହିବେ ଭଲ*
*କେହି ଆଲୋଚକ ଯଦି*
*ନ କରିବେ କବିତାର ମୂଲ ;*
*କେହି ପ୍ରକାଶକ ଯଦି*
*ତମ ପଛେ ଦେବେ ନାହିଁ ଧାଡ଼ି*
*ତେବେ କିବା କବି ତୁମେ*
*କାବ୍ୟ ଲେଖା ଦେବ କିହେ ଛାଡ଼ି ?*

❑ ଭଲ, ଭେଲ କିଏ କହିବ ଅଥବା
କରିବ କିଏ ମୋ କବିତା ମୂଲ,
ପ୍ରକାଶକ କେହି ଛାପିବେ କି ନାହିଁ
ହେବିକି ନହେବି ମୁଁ କାହା ତୁଲ,
ଏକଥାକୁ ଦିନେ ଭାବିନାହିଁ ମନେ
ଅନ୍ତରେ ଭରି ଅଟଳ ଆଶା,
ଫୁଟାଉଛି ମୁହିଁ କବିତାର ଫୁଲ
ହୃଦୟୁ ନିଗାଡ଼ି ମରମୀ ଭାଷା ।
ଯଦି ଥାଏ ତାର ରସ ଓ ମହକ
କେବେହେଲେ ଦିନେ ଜାଣେ ମୁଁ ଜାଣେ
ବାଛିନେବ ତାର ଆପଣାର ସ୍ଥାନ
ରସିକ - ମୋହନ ପାଠକ - ପ୍ରାଣେ ।।

❒ ଓଡ଼ିଶାରୁ ପାଇଲଣି
କାବ୍ୟ ପାଇଁ ବହୁ ପୁରସ୍କାର
ଆଉ କେଉଁ ପୁରସ୍କାର
କବି ତୁମେ ଏବେ ଆଶା କର ?

❒ ପୁରସ୍କାର !
ଟଙ୍କାରେ କେବେ ତଉଲା ଯାଏକି
କବିତା ମୂଲ ?
ପାଠକଟିଏ
ମୁଗ୍ଧ ମନର ଉଚ୍ଛ୍ୱାସଯଦି
ଅଜାଡ଼ି ଦିଏ,
ତାହେଲେ ତାହାକୁ ମଣିବି ଶ୍ରେଷ୍ଠ
ପୁରସ୍କାର,
ଚିରକାଳ ପାଇଁ ସାଇତି ରଖିବି
ସ୍ମୃତିରେ ମୋର ।।

❒ କେଉଁ ଶବ୍ଦ ଭଲ ଲାଗେ ?
ଭଲ ଲାଗେ କେଉଁ ପରି ସୁଖ ?
କେଉଁ ନାରୀ ଭଲଲାଗେ ?
ଭଲଲାଗେ କେଉଁ ପରି ଲୋକ ?
କେଉଁ କବି ଭଲଲାଗେ ?
କିସ ଲାଗେ ପିନ୍ଧିବାକୁ ଭଲ ?
କେଉଁ ଗୀତ ଭଲଲାଗେ ?
ଭଲଲାଗେ କେଉଁ ରଂଗ ଫୁଲ ?
କେଉଁ ବହି ଭଲଲାଗେ ?
ଭଲଲାଗେ କେଉଁ ପତ୍ରିକାଟି ?
କେଉଁ ସଭା ଭଲଲାଗେ ?
ଭଲଲାଗେ କେଉଁ ସ୍ଥାନ ମାଟି ?

❑ ଅଗଣିତ ମଣିଷର
ପାଦଶବ୍ଦ ଲାଗେ ମୋତେ ଭଲ,
ଦେବାରେ ଯେ ସୁଖ ମିଳେ
କେଉଁ ସୁଖ ହେବ ତାର ତୁଲ ?
ସେହି ନାରୀ ଭଲଲାଗେ
ଯେଉଁ ନାରୀ ପାଶେ ପାଶେ ରହି
ହସ ଦିଏ, ରସ ଦିଏ
ପରଷଇ ଅମୃତ - ମଣୋହି ।
ସ୍ୱପ୍ନ ଦେଖି ଯେଉଁ ଲୋକ
ସେ ସ୍ୱପ୍ନକୁ କରଇ ସାକାର,
ସେହି ଲୋକ ପ୍ରିୟ ମୋର
ତା' ପାଦେ ମୋ ନମ୍ର ନମସ୍କାର ।
କବିତାର ଚିତ୍ରପଟେ
ଆଙ୍କେ ଯିଏ ଜୀବନର ଛବି,
ସ୍ୱଚ୍ଛନ୍ଦେ ରଚଇ ଛନ୍ଦ
ସେହି ଅଟେ ମୋର ପ୍ରିୟ କବି ।
ଆଟୋପର ଆଡ଼ମ୍ବର ନାହିଁ
ସାଦାସିଧା ମୋର ପରିଧାନ
ସମାଜରେ ପରିଚୟ ମୋର
ସାଧାରଣ ଅତି ସାଧାରଣ ।
ସେ ଗୀତକୁ ଭଲ ପାଏଁ
ନୀରବତା ଯେଉଁ ଗୀତ ଗାଏ,
ରଂଗନାହିଁ, ଅଂଗ ନାହିଁ-
ଯେ ଫୁଲର ତାକୁ ଭଲପାଏଁ ।
ଯେଉଁ ଗ୍ରନ୍ଥ ଖୋଲିଦେଲେ
ମେଲି ଯାଏ ସୁବର୍ଣ୍ଣ ସକାଳ,
ସେହି ଗ୍ରନ୍ଥ ପ୍ରିୟ ମୋର
ମୋ ମନକୁ କରେ ସେ ଉଜ୍ଜ୍ୱଳ ।

ଭଲଲାଗେ ସେ ପତ୍ରିକା
ଯହିଁ ନବ ସୃଜନର ବେଣୁ
ମେଘର ମହ୍ଲାର ରଚି
ସୃଷ୍ଟିକରେ ଶତ ଇନ୍ଦ୍ରଧନୁ ।
ସେହି ସଭା ଭଲଲାଗେ
ଯେ ସଭାରେ ବାକ୍‌ଚାତୁରୀ ନାହିଁ,
ସେହି ମାଟି ପ୍ରିୟ ମୋର
ଯେଉଁ ମାଟି ମୋର ଜନ୍ମଭୂଇଁ ।।

❑ *ଯାହା ମୁଁ ପଚାରି ନାହିଁ*
*ସଂକ୍ଷେପରେ ଆଉ କିଛି କୁହ*
*ଉତ୍ତରପୁରୁଷ ଲାଗି*
*କିଛି ଶବ୍ଦ ସଂଦେଶରେ ଦିଅ ?*

❑ ଆଉବା କହିବି କଣ?
କହିବାର ଶେଷ କଣ ଅଛି ?
ଗୁଣୁ ଗୁଣୁ ଶବ୍ଦ କରି
ଅବିରତ ମୁଗ୍ଧ ମହୁମାଛି
ମୁହୂର୍ତ୍ତକୁ କରୁଥାଏ
ଯେଉଁ ଭଳି ମହୁରେ ଆପ୍ଳୁତ,
ଉତ୍ତର ପୁରୁଷ ମୋର
ସାଧନାର ପଥ ବରି
କାଳ କାଳ ଧରି
ବୋଲୁଥାନ୍ତୁ ସେହିଭଳି
ଏ ସୃଷ୍ଟିରେ ମଧୁର ଅମୃତ ।।

❑❑

('ଏହିପରି ଆମ **ସମ୍ପର୍କ**' ପତ୍ରିକାର ସୌଜନ୍ୟରୁ)

## କବି ବ୍ରଜନାଥ ରଥଙ୍କ ସୃଷ୍ଟିସମ୍ଭାର :

### କାବ୍ୟ ସଞ୍ଚୟନ :

୧ ॥ ମରୁଗୋଲାପ (୧୯୬୦)
୨ ॥ ନିଜସ୍ୱ ସଂଳାପ (୧୯୬୯)
୩ ॥ ମରୁଗୋଲାପ ଓ ଅନ୍ୟାନ୍ୟ କବିତା (୧୯୭୨)
୪ ॥ ନିଃଶବ୍ଦ ପ୍ରତିବାଦ (୧୯୭୭)
୫ ॥ ସଭ୍ୟତାର ମୁହଁ (୧୯୭୯)
୬ ॥ ମନର ମାନଚିତ୍ର (ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କୃତ) (୧୯୮୩)
୭ ॥ ହେ ମହାଜୀବନ (୧୯୯୧)
୮ ॥ ଲଘୁ ଶତକ (ବ୍ୟଙ୍ଗ କବିତା ସଂକଳନ) (୧୯୯୩)
୯ ॥ କାଁଚକା ଘର (ନିଜସ୍ୱ କବିତାର ହିନ୍ଦୀ ରୂପାନ୍ତର) (୧୯୭୭)

### ଅନୂଦିତ ଗ୍ରନ୍ଥ :

୧ ॥ ନିର୍ବାଚିତ କଲାମ (୧୯୯୫)
(ବାଂଲାଦେଶର ବିଦ୍ରୋହିଣୀ ଲେଖିକା ତସଲିମା ନାସରିନଙ୍କ ଲିଖିତ ଆନନ୍ଦ ପୁରସ୍କାର ପ୍ରାପ୍ତ ଗ୍ରନ୍ଥ)
୨ ॥ ତସଲିମାଙ୍କ ଶ୍ରେଷ୍ଠ କବିତା (୧୯୯୪)
୩ ॥ ଦୁଃଖିନୀ ଝିଅର ଗୀତ (ତସଲିମା ନାସରିନ) (୧୯୯୬)

### ସଂକଳିତ ଗ୍ରନ୍ଥ :

୧ ॥ ଧରିତ୍ରୀ (କବିତା ସଂକଳନ) (୧୯୫୭)
୨ ॥ ସମସାମୟିକ ଓଡ଼ିଆ ପ୍ରେମ କବିତା (୧୯୬୨)
୩ ॥ ମହାମାନବର ସାଗର ତୀରେ (୧୯୭୦)
୪ ॥ କନ୍‌ହେଇନାମା (୧୯୭୬)
୫ ॥ ରଘୁନାଥ ଦାସ ପରିକ୍ରମା (୧୯୮୭)
୬ ॥ କାନ୍ତକବି ସାହିତ୍ୟାଲେଖ୍ୟ (୧୯୯୦)
୭ ॥ ରକ୍ତତୀର୍ଥ ସ୍ମାରକୀ (୧୯୯୦)
୮ ॥ ଓଡ଼ିଆ ଶିଶୁ ସାହିତ୍ୟ ପରିକ୍ରମା (୧୯୯୧)
୯ ॥ ସୁବର୍ଣ୍ଣ ସ୍ମାରକୀ (୧୯୯୪)
୧୦॥ Phakirmohan : His Life & Literature (୧୯୮୪)



## ଶ୍ରୀ ବ୍ରଜନାଥ ରଥ

ଜନ୍ମ : ୧୨ ଜାନୁଆରୀ ୧୯୩୬ ମସିହା, ବାଲେଶ୍ୱର ସଦର ଅନ୍ତର୍ଗତ ସୁନହଟ ଗ୍ରାମରେ ।

ଶିକ୍ଷକପିତା ବିଶ୍ୱନାଥ ରଥଂକ ପ୍ରେରଣାରେ ବାଲ୍ୟକାଳରୁ ସାହିତ୍ୟ ପ୍ରତି ଆଗ୍ରହୀ । ୧୯୪୭ ମସିହାରୁ ଆଜି ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ସୃଷ୍ଟିଶୀଳ ରହି ଓଡ଼ିଆ କାବ୍ୟଧାରାକୁ ପରିପୁଷ୍ଟ କରିଛନ୍ତି । ପ୍ରଗତିଶୀଳ ଭାବ, ମାନବବାଦୀ ଚିନ୍ତାଧାରା ତଥା ସ୍ୱଚ୍ଛନ୍ଦ କାବ୍ୟଶୈଳୀର ଜଣେ ସଫଳ ସ୍ରଷ୍ଟା ଭାବେ ସୁପରିଚିତ ।

ଫକୀରମୋହନ ସାହିତ୍ୟ ପରିଷଦର ସଭାପତି ଓ ଓଡ଼ିଆ ଯୁବଲେଖକ ସମ୍ମିଳନୀର ପ୍ରାକ୍ତନ ସଭାପତି । ଓଡ଼ିଶା ସାହିତ୍ୟ ଏକାଡ଼େମୀର ପୂର୍ବତନ ସଦସ୍ୟ । ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ, ଓଡ଼ିଶାର ଉପସଭାପତି । ବହୁ ସାହିତ୍ୟିକ, ସାଂସ୍କୃତିକ, ସାମାଜିକ ଓ ଶିକ୍ଷାନୁଷ୍ଠାନ ସହ ଜଡ଼ିତ ।

ପୁରସ୍କାର ଓ ସମ୍ମାନ : ବିଷୁବ ମିଳନର ରଜତ ଜୟନ୍ତୀ ପୁରସ୍କାର (୧୯୭୪), ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ('ମନର ମାନଚିତ୍ର' କାବ୍ୟଗ୍ରନ୍ଥ ପାଇଁ - ୧୯୮୪), ଶାରଳା ସ୍ମାରକ ସମ୍ମାନ (୧୯୮୩) କଳାହାଣ୍ଡି ସମ୍ମାନ (୧୯୯୩), କବିଶେଖର ଚିନ୍ତାମଣି ପୁରସ୍କାର (୧୯୯୫), ମାତୃଭୂମି - ସହକାର ସମ୍ମାନ (୧୯[illegible]) ଜଷ୍ଟିସ୍ ହରିହର ମହାପାତ୍ର ସ୍ମୃତି ପୁରସ୍କାର (୧୯୯୬) ବିଷୁବ ପୁରସ୍କାର (୧୯୯୭) ଇତ୍ୟାଦି ।

ପ୍ରକାଶିତ କାବ୍ୟଗ୍ରନ୍ଥ : ମରୁଗୋଲାପ, ନିଜସ୍ୱ ସଂଳାପ, ନିଃଶବ୍ଦ ପ୍ରତିବାଦ, ମରୁଗୋଲାପ ଓ ଅନ୍ୟାନ୍ୟ କବିତା, ସଭ୍ୟତାର ମୁହଁ ମନର ମାନଚିତ୍ର, ହେ ମହାଜୀବନ, ଲଘୁ ଶତକ (ବ୍ୟଙ୍ଗ କବିତା ସଂକଳନ), ତସଲିମାଙ୍କ ଶ୍ରେଷ୍ଠ କବିତା (ଅନୁବାଦ), କାଁଚକା ଘର (ନିଜସ୍ୱ କବିତାର ହିନ୍ଦୀ ରୂପାନ୍ତର), ଦୁଃଖିନୀ ଝିଅର ଗୀତ (ତସଲିମା ନାସରିନଙ୍କ କବିତାର ଅନୁବାଦ) ନିର୍ବାଚିତ କଲାମ (ତସଲିମାଙ୍କ ଅନନ୍ଦ ପୁରସ୍କାର ପ୍ରାପ୍ତ ଗ୍ରନ୍ଥର ଅନୁବାଦ) ।

ସ୍ଥାୟୀ ଠିକଣା : ସୁନହଟ, ବାଲେଶ୍ୱର-୭୫୬୦୦୧